ବିଶ୍ୱସାହିତ୍ୟ ଗ୍ରନ୍ଥମାଳା

# ଗ୍ରୀସ୍ ଦେଶର କାହାଣୀ



ଗ୍ରନ୍ଥମନ୍ଦିର

ବିଶ୍ୱ ସାହିତ୍ୟ ଗ୍ରନ୍ଥମାଳା

# ଗ୍ରୀସ୍ ଦେଶର କାହାଣୀ

[ ଦ୍ୱିତୀୟ ଖଣ୍ଡ ]

ସଙ୍କଳକ :

ଶ୍ରୀ ବଂଶୀଧର ଦାସ, ବି. ଏ. ଡି.ଇଡ୍

ଗ୍ରନ୍ଥମନ୍ଦିର

ପ୍ରକାଶକ :
ମନୋଜ କୁମାର ମହାପାତ୍ର
ଗ୍ରନ୍ଥମନ୍ଦିର, ବିନୋଦବିହାରୀ, କଟକ-୨

ମୁଦ୍ରକ :
ପଞ୍ଚସଖା ପ୍ରକାଶନ, କଟକ-୧

ପ୍ରଥମ ପରିମାର୍ଜିତ ମୁଦ୍ରଣ : ଜାନୁୟାରୀ, ୧୯୯୬

ମୂଲ୍ୟ : ଟ ୧୮-୦୦

# ସୂଚୀ



—

# କଇଁଚସୁନ୍ଦରୀ

ପୂର୍ବକାଳର କଥା । ସମୁଦ୍ର କୂଳରେ କୁଡ଼ିଆଟିଏ କରି ଗୋଟିଏ କେଉଟ ଥାଏ । ତା ନାଆଁ ଇଲସ୍ୱାସ । ତା କୁଡ଼ିଆରେ ସେ ଏକା । ମାଛ ଧରିବାଲାଗି ସେ ବଡ଼ପାହାନ୍ତାରୁ ଡଙ୍ଗା ନେଇ ସମୁଦ୍ରକୁ ଚାଲିଯାଏ । ଦରିଆରେ ମାଛ ଧରି କୂଳକୁ ଫେରିବାବେଳକୁ ଦିପହର ହୋଇଯାଇଥାଏ । ପାଖ ଗାଆଁ ଗଣ୍ଡା ବୁଲି ଧରିଥିବା ମାଛତକ ବିକି ସେଥିରେ ପେଟ ପୋଷେ । କୌଣସି ପ୍ରକାରେ ପେଟଟା ପୂରାଇଦେଇ ଶୋଇପଡ଼େ ଯେ ଉଠେ ଯାଇ ପୁଣି ପାହାନ୍ତିଆକୁ । ଗଭା ବୟସ । ରୋଗ ବଇରାଗ ନଥାଏ । ନିଶ୍ଚିନ୍ତରେ ଗୁଜୁରାଣ ମେଣ୍ଟାଇ ଚାଲିଥାଏ । ହଠାତ୍ ଦିନେ କଣ ହେଲା ନା ସେ ମାଛ ଧରିବା ଲାଗି ମଝି ଦରିଆରେ ଜାଲ ପକାଇ ଟାଣି ଆଣେ ତ, ଦେଖିଲା ଜାଲରେ ମାଛ ବଦଳରେ ପଡ଼ିଛି ଗୋଟିଏ ବଡ଼ କଇଁଚ । କଇଁଚଟି ଆଣି ଡଙ୍ଗା ଉପରେ ଥୋଇ ଦେଇ ଦେଉ ତା ମନରେ ଆସିଲା, 'ଏ କଇଁଚଟି ବିକିବି ନାହିଁ । ନେଇ ପାଳିବି ଯେ କୁଡ଼ିଆ ପାଖର ପୋକ ଜୋକ ମଶା ମାଛି ଖାଇ ମୋ ଘରଟି ସଫାସୁତୁରା ରଖିବ ।'

ସେଦିନ ମାଛ ଧରି କୁଡ଼ିଆକୁ ଫେରିବା ପରେ ଇଲସ୍ୱାସ କଇଁଚଟିକୁ କୁଡ଼ିଆ ଭିତରେ ଛାଡ଼ିଦେଲା । ହାଣ୍ଡିଶାଳରେ ନିଜ ଖାଇବାଲାଗି ଦୁଇ ଚାରିଟା ଭଲମାଛ ରଖିଦେଇ ବାକି ମାଛ ତକ ନେଇ ବିକି କରିବ ବୋଲି ପାଖ ଗାଆଁକୁ ଚାଲିଗଲା । କିନ୍ତୁ ଏଣେ କଣ ହେଲା ନା, ସେ ଦୁଆରେ ଶିକୁଳି ଲଗାଇ ଚାଲିଯିବା ପରେ ପରେ କଇଁଚ ଖୋଳ ଭିତରୁ ଅତି ସୁନ୍ଦରୀ ଝିଅଟିଏ ବାହାରିପଡ଼ିଲା । କଥା କଣ କି ସତରେ ସେ ଗୋଟିଏ ସମୁଦ୍ର ପରୀ କଇଁଚ ବେଶରେ ଥାଏ । ତେଣୁ ତା ନାଆଁ କଇଁଚସୁନ୍ଦରୀ । ସେ ତା ଖୋଳ ଭିତରୁ ବାହାରି ଝାଡ଼ୁଣି ମୁଠାଟିଏ ଧରି ଇଲସ୍ୱାସର ଘର ଭିତରଟା ଓଳାଇ ସଫାସୁତୁରା କରିଦେଲା । ତାପରେ କଇଁଚସୁନ୍ଦରୀ ଇଲସ୍ୱାସ ରଖିଥିବା ମାଛତକ କାଟି ରନ୍ଧାରନ୍ଧି ଆରମ୍ଭ କରିଦେଲା । ଚୂଲି ଲଗାଇ କେତେ କଣ ମସଲା ମ .ଲି ଦେଇ ଆଚ୍ଛାକରି ତରକାରିଟିଏ ରାନ୍ଧିଦେବାପରେ ଚାରିଖଣ୍ଡ ରୁଟି ବି ସେକିଦେଲା । ରନ୍ଧା ସରିଲାରୁ ଖାଇବା ଜିନିଷତକ ଘୋଡ଼େଇ ରଖିଦେଇ ସେ ତା କଇଁଚ ଖୋଳ ଭିତରେ ପଶିଯାଇଛି କି ନାହିଁ ଇଲସ୍ୱାସ ଗାଆଁରେ ମାଛ ବିକି ସଉଦା ପତ୍ର ଧରି କୁଡ଼ିଆକୁ ଫେରିଆସିଲା । ସେ ଆସି ଦୁଆର ମୁହଁରେ ଚାହିଁ ଦିଏ ତ ଘର

ଭିତରେ ଦୀପ ଜଳୁଛି । ଦୀପ କିଏ ଯେ ଜାଳିଛି ବୋଲି ସେ ବ୍ୟସ୍ତ ହୋଇ କବାଟ ଖୋଲି ଘର ଭିତରେ ପଶିଯାଏ ତ ଦେଖିଲା ଘର ଭିତରଟା ଝାଡ଼ୁଝପଟ ସଫାହୋଇଯାଇଛି । କେଉଁଠି ଟିକିଏ ଅଳିଆ ଅଦରକାରୀ ପଡ଼ିନାହିଁ । ତେଣେ ଚୁଲିରେ ନିଆଁ ଦମୁକୁଚି । ଚୁଲି ଉପରେ ଲାଗିଲା ବୋଲି ଦେଖୁ ଦେଖୁ ଦେଖିଲା କି ସୁନ୍ଦର ରୁଟି ତରକାରି ରନ୍ଧାହୋଇ ଚୁଲି ମୁଣ୍ଡରେ ଥୁଆହୋଇଛି । ଏସବୁ ଘଟଣା ଦେଖି ବିଚରା ଆଚମ୍ଭିତ ହୋଇଗଲା ସତ, ହେଲେ ତେଣେ ଦିନଯାକର ଭୋକ ପେଟଭିତରେ ରାହୁପରି ଗର୍ଜୁଥାଏ । ସେ ଆଉ ଆଗପଛ ନ ବିଚାରି ରୁଟି ତରକାରିତକ ପୋଛିପାଛି ଖାଇ ପକାଇଲା । ସେ କି ସୁଆଦିଆ ମାଛ ଝୋଳ ହୋଇଥାଏ ! ଇନ୍ଦ୍ରାସ ତା ଜୀବନରେ ଦିନେହେଲେ ଏପରି ପାଟିସୁଆଦିଆ ତରକାରି ଖାଇନଥିଲା । ବିଚରା ମନ ଖୁସିରେ ଖାଇପିଇ ଆରାମରେ ଶୋଇପଡ଼ିଲା । ରାତି ପାହାନ୍ତିଆରୁ ପୁଣି ଡଙ୍ଗା ନେଇ ଚାଲିଗଲା ଦରିଆ ମଝିକି ।

ସେଦିନ ଦିପହର ବେଳକୁ ମାଛଧରି ଫେରିବା ପରେ କୁଡ଼ିଆରେ ନିଜ ପାଇଁ ଦି'ଟା ଭଲମାଛ ରଖିଦେଇ ଇନ୍ଦ୍ରାସ ସବୁଦିନ ପରି ମାଛ ବିକିବା ଲାଗି ଗାଆଁ ଗହଳକୁ ଚାଲିଗଲା । ସେ ଚାଲିଯିବା ପରେ ପରେ କଇଁଚସୁନ୍ଦରୀ ଖୋଳ ଭିତରୁ ବାହାରିଆସିଲା । ଆଗ ଦିନ ପରି ଘରଦ୍ୱାର ଝାଡ଼ୁଝପଟ କରି ସଫାକରିଦେଲା । ତାପରେ ମାଛତକ କାଟି ତରକାରି କରିଦେଲା । ଚୁଲି ଛଅପଟ ରୁଟି ବି ସେକି ଦେଲା । ତା ପରେ ଖାଇବା ଜାଗାରେ ସବୁ ଜିନିଷତକ ସୁନ୍ଦରଭାବରେ ବାଢ଼ିବୁଢ଼ି ଦେଇ ନିଜ ଖୋଳ ଭିତରେ ଲୁଚିଗଲା । ଇନ୍ଦ୍ରାସ ଆସି ଦେଖିଲା ଘର ଭିତରେ ପୂର୍ବଦିନ ପରି ଦୀପ ବି ଜଳୁଛି । ତା ପାଇଁ ରୁଟି ତରକାରି ବଢ଼ାହୋଇଛି । କିଏ ଏପରି ରାନ୍ଧିବାଢ଼ି ରଖିଛି କିଛି ବୁଝି ନପାରିଲେ ବି ସେ ଖାଇ ପିଇ ସବୁଦିନ ପରି ଶୋଇପଡ଼ିଲା ଏବଂ ରାତି ପାହାନ୍ତିଆରୁ ଉଠି ପୁଣି ଡଙ୍ଗା ନେଇ ଦରିଆ ଭିତରକୁ ଚାଲିଗଲା ।

ଦରିଆ ଭିତରେ ମାଛ ଧରୁଧରୁ ଇନ୍ଦ୍ରାସ ଭାବୁଥାଏ—ମୋ କୁଡିଆରେ ପଶି ଏପରି କିଏ ଯେ ରାନ୍ଧିବାଢ଼ି ଦେଉଛି ? ଏପରି ଭାବୁଭାବୁ ତାକୁ ଗୋଟିଏ ବୁଦ୍ଧି ଦିଶିଲା । ସେ ଠିକ୍ କଲା, ସେଦିନ ଆଉ ମାଛ ବିକିବାକୁ ନ ଯାଇ କୁଡ଼ିଆ ପଛରେ ଲୁଚି ରହିବ; ଦେଖିବ କିଏ ଏପରି ତା ଘର ଭିତରେ ପଶି ରାନ୍ଧିବାଢ଼ି ଦେଉଛି । ମନକଥା ମନରେ ରଖି ଦିପହର ବେଳକୁ ଦରିଆରୁ ମାଛଧରି ଫେରିବା ପରେ କୁଡ଼ିଆ ଭିତରେ ଗଣ୍ଡିଏ ଭଲମାଛ ରଖିଦେଇ ମାଛ ବିକିଯିବା ବାହାନାରେ ଘରୁ ବାହାରିପଡ଼ିଲା । ଖଣ୍ଡେ ବାଟ ଚାଲିଯାଇ ଫେରିଆସିଲା ଏବଂ ଚପିଚପିକା ଆସି ତା କୁଡ଼ିଆର ଝରକାପାଖରେ ଲୁଚିବସିପଡ଼ିଲା । ତେଣେ ଇନ୍ଦ୍ରାସ ଚାଲିଗଲା ଜାଣି କଇଁଚସୁନ୍ଦରୀ ତା ଖୋଳ ଭିତରୁ ବାହାରି କାମଦାମ ଆରମ୍ଭ କରିଦେଲା । ଘରଦ୍ୱାର ଝାଡ଼ୁଝପଟ କରି ମାଛକାଟିବସିଲା । ଇନ୍ଦ୍ରାସ ଝରକା ଫାଙ୍କବାଟେ କଇଁଚ ସୁନ୍ଦରୀକୁ ଦେଖି ବୁଝିଗଲା ଯେ ଏହି ଝିଅଟି ସବୁଦିନ ତା ଘର ସଫାକରି ରନ୍ଧାବଢ଼ା କରି-ଦେଉଛି । ତା ହାତରନ୍ଧା ତ ଖାଇଥିଲା, ଏଥର ତା ସୁନ୍ଦର ରୂପଟି ବି ଦେଖି ସେ ମୋହି

ହୋଇଗଲା । ସେ ଧଡ଼୍ କିନା ଘର ଭିତରେ ପଶିଯାଇ କର୍ଣ୍ଣଚମ୍ପୁନ୍ଦରୀ ହାତରେ ହାତ ପକାଇଦେଇ କହିଲା, "ଆଗୋ ସୁନ୍ଦରୀ, ତୁମର ଯଦି ମୋ ପ୍ରତି ଟିକେ ଦୟା, ଆସ ମତେ ବାହାହୋଇପଡ଼ ।"

କର୍ଣ୍ଣଚମ୍ପୁନ୍ଦରୀ ଲାଜରେ ଝାଉଁଳି ପଡ଼ି କହିଲା, "ହଇ, ତୁମର ଯଦି ମୋତେ ବାହା ହେବାକୁ ମନ, ତେବେ ମୁଁ ତୁମକୁ ବାହାହେବି; କିନ୍ତୁ ତୁମକୁ ମୋର ଗୋଟିଏ ସାନ କଥା ମାନିବାକୁ ପଡ଼ିବ ।"

ଇଲିସ୍ମାଛ ପଚାରିଲା, "କି କଥା ?" କର୍ଣ୍ଣଚମ୍ପୁନ୍ଦରୀ କହିଲା, "ଆମେ ସ୍ୱାମୀ ସ୍ତ୍ରୀହୋଇ ରହିବା; କିନ୍ତୁ ତୁମେ ମୋର ଏ କର୍ଣ୍ଣିଚ ଖୋଳଟି ନଷ୍ଟ କରିଦେବନାହିଁ । ଯଦି ନଷ୍ଟ କରିଦିଅ ତେବେ ଆମ ଉପରକୁ ବିପଦ ମାଡ଼ିଆସିବ ।"

ଇଲିସ୍ମାଛ କହିଲା, "ଓଃ ଏଇ କଥା ତ ! ହଉ ତୁମ କଥା ରଖିବି ।" ସେହିଦିନଠାରୁ ସେ ଦୁଇ ପ୍ରାଣୀ ସ୍ୱାମୀ ସ୍ତ୍ରୀ ହୋଇ ହସଖୁସିରେ ଦିନ କଟାଇବାକୁ ଲାଗିଲେ । ଇଲିସ୍ମାଛ କର୍ଣ୍ଣଚମ୍ପୁନ୍ଦରୀକୁ ଏତେ ଭଲପାଇଲା ଯେ ଭାବିଲା ଯଦି ସେ କେବେ କର୍ଣ୍ଣିଚ ଖୋଳ ଭିତରେ ପଶି ସମୁଦ୍ରକୁ ଚାଲିଯିବ, ତେବେ ସେ ଆଉ ପ୍ରାଣ ଧରି ରହି ପାରିବ ନାହିଁ । ତେଣୁ ଦିନେ ସେ କର୍ଣ୍ଣିଚ ଖୋଳଟି ପୋଡ଼ି ନଷ୍ଟ କରିଦେଲା । ଏ ଘଟଣା ଦେଖି କର୍ଣ୍ଣଚମ୍ପୁନ୍ଦରୀ ବହୁତ କାନ୍ଦିଲା; କହିଲା ଏଥର ନିଶ୍ଚୟ ତା ସ୍ୱାମୀ ଉପରକୁ ବିପଦ ମାଡ଼ିଆସିବ ।

ଇଲିସ୍ମାଛ ସ୍ତ୍ରୀ କଥାକୁ ହସରେ ଉଡ଼ାଇଦେଲା; କିନ୍ତୁ ସତକୁ ସତ ତା ଉପରକୁ ବିପଦ ମାଡ଼ିଆସିଲା । କଥା କଣ କି, ସେ ଦେଶର ରଜା ବଡ଼ ଦୁଷ୍ଟ ପ୍ରକୃତିର । ତାଙ୍କର ଯେତେ-ବେଳେ ଯାହା ଇଚ୍ଛା ହେବ ସେତେବେଳେ ତାହା ହୋଇଯିବା ଦରକାର । ତାଙ୍କ ବୁଦ୍ଧି ପାଇଁ, ମନ୍ତ୍ରୀ, କୋଟୁଆଲ ବି ମିଳିଯାଇଥାନ୍ତି । ଦିନେ ସେ ରଜାଙ୍କର ଖିଆଲ ଉଠିଲା ଯେ ତାଙ୍କ ରାଣୀଗୁଡ଼ାକ ଭାରି ଅସୁନ୍ଦରୀ, ସେ ଗୋଟିଏ ସର୍ବାଙ୍ଗସୁନ୍ଦରୀ କନ୍ୟା ବାହା ହେବେ । ସଙ୍ଗେ ସଙ୍ଗେ ସେ ମନ୍ତ୍ରୀକୁ ଡକାଇ କହିଲେ, "ମନ୍ତ୍ରୀ, ରାଜ୍ୟସାରା ଲୋକ ପଠାଇ ଏପରି ଗୋଟିଏ କନ୍ୟା ଠାବକର ଯାହାଠାରେ ଖୁଣ ବୋଲି କିଛି ନଥିବ । ମୁଁ ସେ ସର୍ବାଙ୍ଗସୁନ୍ଦରୀ କନ୍ୟାକୁ ବିବାହ କରିବି ।"

ଖୋଦ ରଜାଙ୍କ ଅଦେଶ—ନ ମାନିବାକୁ କି କାହାର ! ମନ୍ତ୍ରୀ ସଙ୍ଗେ ସଙ୍ଗେ ରାଜ୍ୟର ଚାରିଆଡ଼େ ଚର ପଠାଇ ସର୍ବାଙ୍ଗସୁନ୍ଦରୀ କନ୍ୟା ଖୋଜାଇଲେ । ଚରମାନେ ରାଜ୍ୟର ଚାରିଦିଗରେ ଯେତେ ଗାଆଁ ଗଣ୍ଡା ଥିଲା ସବୁ ଖୋଜିଗଲେ, ହେଲେ ସର୍ବାଙ୍ଗସୁନ୍ଦରୀ କନ୍ୟା କେଉଁଠି ପାଇଲେନାହିଁ । ଦେଖିଲେ ସ୍ତ୍ରୀମାନେ କେତେ ସୁନ୍ଦରୀ ହେଲେ ମଧ୍ୟ କାହା ରୂପରେ କଣ ହେଲେ ଖୁଣ ଅଛି । ଚରଗୁଡ଼ାକ ରାଜ୍ୟସାରା ବୁଲି ବୁଲି ନିରାଶ ହୋଇ ଫେରୁଛନ୍ତି, ଦେଖିଲେ ସମୁଦ୍ର କୂଳରେ ଇଲିସ୍ମାଛର ଦୁଆର ମୁହଁରେ ଗୋଟିଏ ସୁନ୍ଦରୀ ସ୍ତ୍ରୀ ଠିଆହୋଇଛି । ତା ଦେହରେ ଖୁଣ ବୋଲି କିଛି ନାହିଁ । କେଉଁଟପର ବୋହୂ ହେଲେ କଣ ହେଲା, ସେ ସର୍ବାଙ୍ଗସୁନ୍ଦରୀ । ସେ କିଏ କହିଲ ? ସେ ସେହି କର୍ଣ୍ଣଚମ୍ପୁନ୍ଦରୀ । ଚରମାନେ ତାକୁ

ଇଲସ୍ୱାସର ସ୍ତ୍ରୀ ବୋଲି ଜାଣିସାରି ରଜାଙ୍କ ଦରବାରରେ ଯାଇ ଖବରଟା ଦେଇଦେଲେ ।
ରଜା କହିଲେ, "ତା ଜାତି ଗୋଷ୍ଠରେ ଆମର କଣ ଯାଏ ? ସେ ଯେତେବେଳେ ସର୍ବାଙ୍ଗ-
ସୁନ୍ଦରୀ ଆମେ ତାକୁ ବିବାହ କରିବା ।"

ରଜାଙ୍କର ଏ କଥା ଶୁଣି ପଣ୍ଡିତମାନେ କହିଲେ, "କିନ୍ତୁ ମହାରଜା, ଜଣେ ଲୋକ ବଞ୍ଚିଥାଉଥାଉ ତା ସ୍ତ୍ରୀକୁ ଜବରଦସ୍ତି ଧରିଆଣି ବିବାହକଲେ ଅଧର୍ମ ହେବ ।" ରଜା ଦେଖିଲେ କଥାଟା ସତ । ତେଣୁ ସେ ମନ୍ତ୍ରୀଙ୍କୁ ପଚାରିଲେ, "ଆହେ ! କଣ କଲେ ମୁଁ ଇଲସ୍ୱାସର ସ୍ତ୍ରୀକୁ ବିବାହ କରିପାରିବି ?"

ମନ୍ତ୍ରୀ କହିଲେ, "ମଣିମା, ଏଇଟା କି କଥାରେ କଥା ଯେ ଏତେ ଚିନ୍ତା କରୁଛନ୍ତି ? ତାକୁ ଦରବାରକୁ ଡକାଯାଉ । ସେ ଆସି ପହଞ୍ଚୁ ପହଞ୍ଚୁ ତାକୁ ଏପରି ଗୋଟାଏ କାମ ଦେଇଦିଅନ୍ତୁ ଯେ ସେ ମୋଟେ କରିପାରିବନାହିଁ । ତାପରେ ମଣିମାଙ୍କ ଆଦେଶ ଅମାନ୍ୟ କରିବା ଦୋଷରେ ଲୋକଟିକୁ ଫାଶି ଦେଇଦେଲେ କାମ ଶେଷ ।"

ରଜା ମନ୍ତ୍ରୀଙ୍କ ବୁଦ୍ଧିକୁ ତାରିଫ୍ କରି କହିଲେ, "ବାଃ, ଠିକ୍ କହିଛ, ନ ହେଲେ କି ତୁମେ ମୋ ମନ୍ତ୍ରୀ ହୋଇଥାନ୍ତ !" ସଙ୍ଗେ ସଙ୍ଗେ ଇଲସ୍ୱାସକୁ ଧରିଆଣିବାଲାଗି ରଜା ପିଆଦା ପଠାଇଦେଲେ । ପିଆଦାମାନେ ଯାଇ ଇଲସ୍ୱାସ ଦୁଆରେ ପହଞ୍ଚୁ ପହଞ୍ଚୁ ରଜାଙ୍କ ତଲବ ଶୁଣାଇଦେଲେ । ତଲବ ଶୁଣି ଇଲସ୍ୱାସ ଯାଇ କହିଲା, "ମୁଁ ତ କେଉଟ ବାପୁଡ଼ା, ଖଟିଲା ଦିନ ଖାଉଛି ନ ଖଟିଲା ଦିନ ଉପାସ—ମତେ କାହିଁକି ମହାରଜା ଡକାଇଛନ୍ତି ?"

କର୍ଣ୍ଣଚସୁନ୍ଦରୀ ସ୍ୱାମୀକୁ ଦୁଃଖରେ କହିଲା, "ମୁଁ ମନାକରୁକରୁ ତୁମେ ମୋ ଖୋଳପାନିକୁ ପୋଡ଼ି ନଷ୍ଟ କରିଦେଲ । ହେଇଟି ଦେଖ, ଏବେ ପଡ଼ିଲା ବିପଦ ପଡ଼ିଗଲା । ରଜାଙ୍କ ତଲବ ମାନି ଯାଅ; ହେଲେ ଚିନ୍ତାକରି ନ ହୋଇ ସବୁକାମ କରିବ ।"

ଇଲସ୍ୱାସ କାନମୁଣ୍ଡ ଅଣ୍ଡିସି ପିଆଦାଙ୍କ ସାଙ୍ଗରେ ଗ୍ଲଲିଲା । ସେ ଯାଇ ରଜଦରବାରରେ ଠିଆ ହୋଇଛି କି ନାହିଁ ରଜା ଟପାଟାଏ ହୋଇ ତାକୁ କହିଲେ, "କରେ, ବାପ ଅଜା ସାତପୁରୁଷ ଧରି ଆମ ସମୁଦ୍ରରୁ ମାଛ ଧରି ଖାଉଛ; ଦିନେ ହେଲେ ଭେଟିଟାଏ କି ଖଜଣା ଦିପଇସା ଆଣି ଦେଇଲୁଣି ?"

ଇଲସ୍ୱାସ କରପତ୍ର ଯୋଡ଼ି କହିଲା, "ମଣିମା, ଗରିବ ଜୀବନ, ସବୁ ଆଜ୍ଞାକୁ ନଅଣ୍ଡ..."

ରଜା ଗର୍ଜନକରି ଉଠିଲେ, "ଚୁପ୍ କର । ମୁଁ ତୋ ଫିସାଦ ଶୁଣିବାକୁ ଗ୍ଲହେଁନା । ବର୍ତ୍ତମାନ ତୋ ଉପରେ ଗୋଟାଏ କାମ ଦିଆଯାଉଛି, ଶୁଣ । ଆମ ନଅର ଭିତର ବାହାର ଘରଆଡ଼େ ସୁନା କଲେଇ କରିଯିବ । ତତେ ଧନଦନ ସମସ୍ତ ଦିଆଗଲା ତୁ ଯାଇ ସୁନା ନେଇଆସିବୁ ଯେ ଏ କାମକୁ ମୋଟେ ନଅଣ୍ଡହେବନାହିଁ । ଯଦି ସୁନା ଯୋଗାଇ ନ ପାରୁ, ତେବେ ତତେ ଫାଶି କାଠରେ ଝୁଲାଇଦିଆଯିବ ।"

ଇଲସ୍ୱାସ ବାରକେହୁଙ୍କ ହୋଇ ଛାମୁରେ ଜଣାଇଲା, "ମୁଁ ଗରିବ ବାପୁଡ଼ା; ସୁନା

କଏ ମୁଁ କଏ ? ମୋ ଘରେ କାଣି କଉଡ଼ିକର ବି ସୁନା ନାହିଁ । ମୁଁ ଏତେ ସୁନା କାହୁଁ ପାଇବି !"

ରଜା କିନ୍ତୁ ତା ମିନତି ଶୁଣିଲେ ନାହିଁ । ମୁହଁ ବୁଲେଇ ନେଇ କହିଲେ, "ଆଣି ନ ପାରିଲେ ମରିବୁ । ମୋ କଥା ଅନ୍ୟଥା ହେବନାହିଁ ।"

ଇଲ୍ୟାସ ବିଚରା ଘରକୁ ଫେରି କାନ୍ଦକାନ୍ଦ ହୋଇ ସ୍ତ୍ରୀ ଆଗରେ ସବୁ କଥା କହିଲା । ସବୁ ଶୁଣିସାରି ତାକୁ ଆଶ୍ୱାସନା ଦେଇ କଇଁଚସୁନ୍ଦରୀ କହିଲା, "ହଉ, ଯାହା ହେବାର ହେଲାଣି—ଆଉ ଚିନ୍ତା କରନାହିଁ । ମୁଁ ତୁମକୁ ଏ କାମରେ ସାହାଯ୍ୟ କରିବି । କାଲି ସକାଳେ ତୁମେ ଦରିଆକୁ ଗଲେ ମୋ ମାଆକୁ ଡାକିବ । ଡାକ ଶୁଣିଲେ ସେ ନିଶ୍ଚୟ ଆସିବ । ତାଙ୍କୁ କହିବ ଆମ ସରଘରେ ମୋର ଯେଉଁ ଶ୍ରେଷ୍ଠ ବାକ୍‌ସଟି ଅଛି ସେଇଟି ଆଣିଦେବେ । ତୁମେ ତାଙ୍କଠାରୁ ବାକ୍‌ସଟି ଆଣିଲେ ଦେଖିବ ମୁଁ କଣ କରି କାମ ତୁଲେଇଦେବି ।"

ଇଲ୍ୟାସ ସକାଳୁ ସକାଳୁ ଡଙ୍ଗା ନେଇ ମଝିଦରିଆକୁ ଚାଲିଗଲା । ମଝି ଦରିଆରେ ଡଙ୍ଗା ଠିଆକରି ଡାକ ପକାଇଲା, "ହେ କଇଁଚସୁନ୍ଦରୀର ମାଆ, ଗୋଟିଏ ଖବର ଅଛି ଶୁଣିଯାଅ ।" ସେ ଯୋଡ଼ାଏ ଥର ଡାକିଛି କି ନାହିଁ ଦରିଆ ପାଣିରେ ଢେଉଁର କାଟି ଗୋଟାଏ ମସ୍ତବଡ଼ କଇଁଚ ଭାସିଉଠିଲା । ଇଲ୍ୟାସର ଡଙ୍ଗା ପାଖକୁ ଆସି ସେ କହିଲା, "ମତେ ଡାକୁଥିଲ କି ଜୁଆଇଁପୁଅ ? କଣ ଖବର ସବୁ ଭଲଟି ?" ଇଲ୍ୟାସ ତାଙ୍କୁ ପ୍ରଣାମ କରି କହିଲା, "ତୁମ ଝିଅ ଖବର ଦେଇଛି, ସରଘରେ ତାର ଯେଉଁ ଶ୍ରେଷ୍ଠ ବାକ୍‌ସଟି ଅଛି, ସେଇଟି ତାର ବଡ଼ ଦରକାର ଅଛି—ଟିକିଏ ଆଣିଦେଲେ ମୁଁ ନେବି ।"

"ଓଃ, ଏଇକଥା ! ଟିକିଏ ରହିଥାଅ, ମୁଁ ଆଣି ଦେଉଛି" କହି ମାଆ କଇଁଚ ପାଣି ଭିତରେ ବୁଡ଼ିଗଲା ଏବଂ ପାଞ୍ଚ ମିନିଟ ଭିତରେ ସୁନ୍ଦର ଗୋଟିଏ ଶ୍ରେଷ୍ଠ ବାକ୍ସ ଆଣି ଇଲ୍ୟାସ ହାତକୁ ବଢ଼ାଇଦେଲା । ଇଲ୍ୟାସ ଯେତେବେଳେ ବାକ୍‌ସଟି ଆଣି କଇଁଚସୁନ୍ଦରୀକୁ ଦେଖାଏ, ସେତେବେଳେ କଇଁଚସୁନ୍ଦରୀ କହିଲା, "ଆଉ ଚିନ୍ତା କରନାହିଁ । ଦେଖ, ଏ ଭିତରେ କଣ ଅଛି ।" ଇଲ୍ୟାସ ବାକ୍‌ସଟି ଖୋଲି ଦେଖେ ତ ସେ ଭିତରେ ଭର୍ତ୍ତି ସୁନା ଭରିହୋଇରହିଛି । ସେ ସ୍ତ୍ରୀକୁ ଧନ୍ୟବାଦ ଦେଇ କହିଲା, "ସତରେ ମୋ ପାଇଁ ତୁମର ଭାରି ଦରଦ । କିନ୍ତୁ ଏତକ ସୁନା କଣ ଏତେ ବଡ଼ ନଅରକୁ ପାଇବ ? ଭିତର ବାହାର ଚାରିଆଡ଼େ ସୁନା ଲଗେଇ କରାଯିବ, ଏପରି ହଜାରେ ବାକ୍ସ ସୁନା ହେଲେ ବି ପାଇବ ନାହିଁ ।" କଇଁଚସୁନ୍ଦରୀ କହିଲା, "ତୁମେ ଆଗ ଏତକ ନେଇ କାମରେ ଲଗାଅ, ନଅଣ୍ଟ ହେଲେ ସେକଥା ମୁଁ ବୁଝିବି ।"

ଇଲ୍ୟାସ ସୁନା ବାକ୍ସ ନେଇ ରଜାଙ୍କ ଦରବାରରେ ପହଞ୍ଚିଗଲା । ଏତେ ଟିକିଏ ସୁନା ଦେଖି ରଜା ମନେ ମନେ ହସିଲେ । ଯାହା ହେଉ ମିସ୍ତ୍ରୀ କାରିଗର ଆସି ସୁନା ଲଗେଇ କାମରେ ଲାଗିଗଲେ । ସେମାନେ ଦେଖିଲେ ଯେ ବାକ୍‌ସରୁ ଯେତେ ସୁନା ନେଉଛନ୍ତି, ତାହା ସରୁନାହିଁ । କାରିଗରମାନେ ନଅରର ଭିତର ବାହାର ଚାରିଆଡ଼ ଢୁଇପରସ୍ତ କରି

ସୁନା ତଲେଇ କରିଦେଲେ, ତଥାପି ସେ ବାକ୍ସର ସୁନା ସରିଲା ନାହିଁ ଦେଖି ସମସ୍ତେ ତାଜୁବ୍ ହୋଇଗଲେ । ଇଲିସ୍ୱାପ ମନେ ମନେ କଇଁଚସୁନ୍ଦରୀକୁ ପ୍ରଶଂସା କରି ବାକ୍ସଟିକୁ ନେଇ ଘରକୁ ଫେରିଗଲା ।

ଘଟଣା ଦେଖି ରାଜା ଚିନ୍ତାରେ ପଡ଼ିଲେ । ସତେ କଣ ଗୁରୁ କେଉଁଟଟାଏ ତାଙ୍କୁ ବଳିଯିବ ? ସେ ମନ୍ତ୍ରୀଙ୍କୁ ଡାକି କହିଲେ, "ଦେଖୁଛ ତ, କେଉଁଟ ଟୋକା ଧନଦନ ମିଆଦ ଭିତରେ ସବୁକାମ ଶେଷ କରିଦେଲା । ନଅର ଡାଉ ଡାଉ ହୋଇ ଝଟକୁଛି । ଏଥିରେ ମୁଁ ତାକୁ କି ଦଣ୍ଡ ଦେବି ? ଆଉ ଗୋଟାଏ କିଛି ଉପାୟ ବାହାର କର ।"

ମୁଖ୍ୟମନ୍ତ୍ରୀ ରାଜାଙ୍କୁ କହିଲେ, "ମଣିମା, ଏଥର ତାକୁ ଡାକି ହୁକୁମ ଦିଅନ୍ତୁ ଯେ, ସେ ଆମ ସୈନ୍ୟବାହିନୀର ସବୁ ସୈନ୍ୟ ସାମନ୍ତଙ୍କୁ ଏକାଠି ବସାଇ ଗୋଟାଏ ବଡ଼ ଭୋଜି ଦେବ । ସମସ୍ତେ ପେଟପୂରି ଖାଇବେ, କେହି ଅଖିଆ ବା ଅଧାଖିଆ ଫେରିବେନି । ସେ ଯଦି ଏ ଭୋଜି ଦିଆଇପାରିବନାହିଁ, ତେବେ ତାକୁ ଫାଶି ଦିଆଯିବ ।"

ରାଜାଙ୍କ ମନକୁ କଥାଟା ପାଇଲା । ସେ ଭାବିଲେ କେଉଁଟ ଟୋକା ଏଥର ନିଶ୍ଚୟ ହାରିଯିବ । ସେ ସଙ୍ଗେ ସଙ୍ଗେ ଇଲିସ୍ୱାପ ଘରକୁ ପିଆଦା ପଠାଇଦେଲେ । ରାଜାଙ୍କ ପାଖରୁ ପୁଣି ପିଆଦା ଆସିଲାଣି ଦେଖି କଇଁଚସୁନ୍ଦରୀ ଇଲିସ୍ୱାପକୁ କହିଲା, "ଦେଖିଲ, ଏ ଦ୍ୱିତୀୟ ବିପଦ ପଡ଼ିଲା । ରାଜାଙ୍କ ପାଖରେ ହୁସିଆର ହୋଇ କଥାଭାଷା କରିବ; ହେଲେ ଡରିବ ନାହିଁ ।"

ପିଆଦାମାନେ ଇଲିସ୍ୱାପକୁ ନେଇ ରାଜ ଦରବାରରେ ଠିଆ କରାଇଦେଲେ । ତାକୁ ଦେଖୁ ଦେଖୁ ରାଜା ଗର୍ଜନ କରି ଶୁଣାଇଦେଲେ, "ଆରେ ଠକ, ବାପ ଗୋସାଇଁ ବାପ ଅମଳରୁ ମାଛ ବିକି ସୁନା ରଖିଥିଲୁ ବୋଲି ଏ ଯେଉଁ ତଲେଇ କରିଦେଲୁ ଏଥିରେ କଣ ତୋର ସବୁ ଶୁଖା ପଡ଼ିଗଲା ? ତତେ ଆଉ ଗୋଟାଏ କାମ ଦିଆଯାଉଛି । ଦୁଇ ଦିନ ଭିତରେ ତୁ ଏପରି ଗୋଟିଏ ଭୋଜିର ଆୟୋଜନ କରିବୁ ଯେ ସେଥିରେ ଆମ ରାଜ୍ୟର ଯେତେ ସୈନ୍ୟସାମନ୍ତ ଅଛନ୍ତି ସମସ୍ତେ ପେଟଭରି ଖାଇବେ, କେହି ଅଖିଆ କି ଅଧାଖିଆ ହୋଇ ଯିବେନାହିଁ । ପୁଣି ଯେ ଯେତେ ପାରିବ ସେତେ ଖାଇବ । ମୋ କଥା ଯଦି ଅନ୍ୟଥା କରୁ ତେବେ ତତେ ପ୍ରାଣଦଣ୍ଡ ମିଳିବ ବୋଲି ଜାଣିଥା ।"

ରାଜାଙ୍କ ଆଦେଶ ଶୁଣି ଇଲିସ୍ୱାପର ହାଲୁକା ଶୁଖିଗଲା । କାନ୍ଦ କାନ୍ଦ ହୋଇ ଘରକୁ ଆସି ସେ ସ୍ତ୍ରୀକୁ କହିଲା, "ବୁଝିଲ, ଏଥର ଆଉ ରକ୍ଷାନାହିଁ । ରାଜା ମୋତେ ନିଶ୍ଚୟ ପ୍ରାଣଦଣ୍ଡ ଦେବେ ।"

କଇଁଚସୁନ୍ଦରୀ ପଚାରିଲା, "କାହିଁକି, କଣ କହିଲେ କି ?"

—"କହିଲେ ରାଜ୍ୟର ସବୁ ସୈନ୍ୟ ସାମନ୍ତଙ୍କୁ ଖୋଇପାରିବା ଭଳି ଗୋଟିଏ ଭୋଜି କରିବାକୁ ହେବ । ସେଥିରେ ଯେ ଯେତେ ଇଚ୍ଛା ଖାଇବ । ଖାଇବାକୁ ଦେଇ ନ ପାରିଲେ ମୋର ମୁଣ୍ଡକାଟ ହେବ । ମୋ ପରି ଗରିବ ଲୋକ କଣ ଏ କାମ କରିପାରିବ ନା ପ୍ରାଣଦଣ୍ଡରୁ ଛୁଡ଼ପାଇବ ?"

କର୍ପୂରଚସୁନ୍ଦରୀ କହିଲା, "ଏଇ କଥା ତ—ଚିନ୍ତାକରନାହିଁ । କାଲି ସକାଳେ ସମୁଦ୍ରକୁ ଗଲେ ମୋ ମାଆଠାରୁ ଆମ ଭାଣ୍ଡାଶାଳର ଶ୍ରେଷ୍ଠ ଅଟିକାଟା ମାଗିଆଣିବ । ତା ପରେ କଣ କରିବ ମୁଁ କହିବ ।"

ଇଲିସ୍ବାସ ପାହାନ୍ତିଆରୁ ଉଠି ତଙ୍ଗାନେଇ ସମୁଦ୍ରକୁ ଗ୍ଳଲିଗଲା । ଦରିଆ ମଝିରେ ତଙ୍ଗାରଖି ଡାକ ଛାଡ଼ିଲା, "ହେ କର୍ପୂର ସୁନ୍ଦରୀଙ୍କ ମାଆ, ତୁମ ଝିଅ ଗୋଟିଏ ଖବର ପଠାଇଛନ୍ତି, ଶୁଣିଯାଅ ।"

ଆଗ ଦିନ ପରି ବୁଢ଼ୀ କଇଁଚ ଆସି ପଗ୍ଳରିଲା, "ଆଜି ପୁଣି କି ଖବର ପଠାଇଛି କି ବାପ ?"

—"ଝିଅ କହିଛି—ତୁମ ଭାଣ୍ଡାଶାଳର ଶ୍ରେଷ୍ଠ ଅଟିକାଟି ଦେବାକୁ ।"

"ଆଚ୍ଛା ଆଣିଦେଉଛି," କହି ବୁଢ଼ୀ କଇଁଚ ପାଣି ଭିତରେ ବୁଡ଼ିଗଲା ଏବଂ କିଛି ସମୟ ପରେ ଶ୍ରେଷ୍ଠ ଅଟିକା ଟିଏ ଆଣି ଇଲିସ୍ବାସ ହାତରେ ଧରାଇଦେଲା । ଅଟିକାଟି ଦେଖି ଦେଖି ଇଲିସ୍ବାସ ନିରାଶ ହୋଇଗଲା । ଭାବିଲା, ଏଡ଼େ ଟିକିଏ ଅଟିକାରେ କେତେ ବା ରାନ୍ଧିହେବ ଯେ ସେ ସୈନ୍ୟବାହିନୀକୁ ଭୋଜିଦେବ ! ଯାହାହେଉ ଅଟିକାଟି ଧରି ସେ ଘରକୁ ଆସିଲା ଓ ସ୍ତ୍ରୀ ହାତରେ ଅଟିକାଟି ଦେଲା ।

କର୍ପୂର ସୁନ୍ଦରୀ କହିଲା, "ଅଟିକାଟି ନେଇ ରାଜାଙ୍କ ନଅରକୁ ଗ୍ଳଲିଯାଅ । ରାଜାଙ୍କ ରୋଷଘରେ ଶ୍ରେଷ୍ଠ ଚୁଲିଟିଏ କରି ଅଟିକାଟି ବସାଇଦେବ । ଅଳ୍ପ ପାଣି ଦେଇ ଚୁଲିରେ ବସାଇ ଜାଳ ଦେଇଦେବା ପରେ ପରେ ରାଜାଙ୍କୁ ଖବର ଦେଇଦେବ ଯେ ରନ୍ଧା ସରିଗଲା, ଏଥର ଖାଇବା ଲୋକଙ୍କୁ ଧାଡ଼ିରେ ବସାଇ ପଙ୍ଗ ଲଗେଇଦଅନ୍ତୁ ।"

ଇଲିସ୍ବାସ କହିଲା, "ଏଁ, କଣ ରାନ୍ଧିଥିବ ଯେ ଏପରି ଖବର ଦେଇଦେବ ?"

କର୍ପୂର ସୁନ୍ଦରୀ କହିଲା, "ତୁମେ ଯାହା କହିବ ଏ ଅଟିକାରୁ ତାହା ବାହାରିବ ? ଯେତେ ବାଢ଼ିବ ଦେଖିବ ଅଟିକାରେ ସେତେ ଭରିହେଉଥିବ ।"

ଇଲିସ୍ବାସ ସ୍ତ୍ରୀ କଥାରେ ବିଶ୍ୱାସକରି ଅଟିକାଟି ନେଇ ରାଜାଙ୍କ ନଅରକୁ ଗ୍ଳଲିଲା । ସେ ନଅରରେ ପହଞ୍ଚି ପହଞ୍ଚି ତା ଅଟିକାଟି ଦେଖି ରାଜା ମନ୍ତ୍ରୀ ସମସ୍ତେ ହସିଉଠିଲେ । ସେମାନେ ସେପରି ହସୁଥାନ୍ତି, ଇଲିସ୍ବାସ ରୋଷଘରକୁ ଯାଇ ଚୁଲିଟିଏ କରି ଅଟିକାଟି ବସାଇଦେଲା । ରାଜା ମନ୍ତ୍ରୀ ହସି ହସି ବେଦମ୍ ହୋଇଯିବା ବେଳକୁ ଇଲିସ୍ବାସ୍ ଖବର ପଠାଇଦେଲା ଯେ, ରୋଷେଇ ସରିଗଲା, ଏଥର ଖାଇବାଲୋକେ ପଙ୍ଗତରେ ବସିଯାଆନ୍ତୁ ।

ଏ ଖବର ଶୁଣି ରାଜା ଆଶ୍ଚର୍ଯ୍ୟ ହୋଇଗଲେ । ଭାବିଲେ ଇଲିସ୍ବାସ ପାଗଳ ହୋଇଗଲା । ତଥାପି ସମସ୍ତଙ୍କ ଆଗରେ ଦୋଷୀ ସାବ୍ୟସ୍ତ କରାଇବା ଲାଗି ସେ ସୈନ୍ୟମାନଙ୍କୁ ପଙ୍ଗତରେ ବସାଇଦେଲେ । ହଜାର ହଜାର ସୈନ୍ୟ ଥାଳି ଥାଳିଆ ଧରି ଖାଇବାକୁ ବସିଗଲେ । ପରଷିମାନେ ବଡ଼ ବଡ଼ ହଣ୍ଡା ବାଲ୍ଟି ଧରି ରୋଷଘରେ ପଶିଗଲେ । ଇଲିସ୍ବାସ ନାନା

ପ୍ରକାର ଖାଦ୍ୟର ନାଆଁ ଧରି ସେ ଅଟିକାରୁ ଜିନିଷ ଆଣି ହାଣ୍ଡି ଓ ବାଲ୍ଟିରେ ଭର୍ତ୍ତିକରିଗଲା । ଆଶ୍ଚର୍ଯ୍ୟ କଥା ଯେ ଯେତେ କାଢ଼ୁଥାଏ, ଅଟିକାରୁ ସେତେ ଖାଦ୍ୟ ବାହାରୁଥାଏ । ଥାଳ ଥାଳ ଲୁଚି ପରଟା, ବାଲ୍ଟି ବାଲ୍ଟି ଖିରି ତରକାରୀ ନେଇ ପରଷୁଣି-ମାନେ ଯେ ଯେତେ ପାରିଲେ ବାଢ଼ିଗଲେ । ଖାଇବା ଲୋକେ ଯେ ଯେତେ ପାରିଲେ ଖାଇଲେ । ବେଶି ମାଲଅଛି ଦେଖି ଲୋକେ ନିଜ ନିଜ ଘରକୁ ବି ବୋହିନେଲେ । ନଗରତମାମ ଲୋକ ପେଟପୂରାଇ ଭୋଜି ଖାଇଲେ, ତଥାପି ଇଲସ୍ୱାସର ସେ ଗ୍ରେଟ ଅଟିକାଟି ଖାଲିହେଲନାହିଁ । ସୈନ୍ୟସାମନ୍ତମାନେ ଖାଇପିଇ ଇଲସ୍ୱାସର ପ୍ରଶଂସା କରି କରି ଛାଉଣିକୁ ଫେରିଲେ । ଖାଇବା ଲୋକେ ସିନା ଖୁସି ହୋଇଗଲେ, ହେଲେ ଏ ଘଟଣା ଦେଖି ରାଜା ଖାଲି ରକ୍ତଗୁହାଳ ଗ୍ରେବାଇହେଲେ । ତେଣେ ଭୋଜିଦେଇସାରି ଇଲସ୍ୱାସ ତା କୁଡ଼ିଆକୁ ଫେରିଯାଇ ସ୍ତ୍ରୀ ଆଗରେ ସବୁ କଥା ଗପିଗଲା ।

ରାଜା ରାଗ ଗରଗର ହୋଇ ମନ୍ତ୍ରୀମାନଙ୍କୁ ଡକାଇ କହିଲେ, "ଗୁର କେଉଟଟାଏ, ସେ ପୁଣି ଏତେ ବଡ଼ କାମ କରି ଆମ୍ଭସଭଙ୍କୁ ତାଜୁବ୍ କରିଦେଲା ! ତୁମେ ସବୁ ଏତେ ମନ୍ତ୍ରୀ ଥାଉଥାଉ ତାକୁ କେହି କାବୁ କରିପାରିଲେ ନାହିଁ । ଏହାଠାରୁ ବଳି ଲାଜର କଥା କଣ ଅଛି ?"

ରାଜାଙ୍କ କଟୂବାଣୀ ଶୁଣି ମୁଖ୍ୟମନ୍ତ୍ରୀ କହିଲେ, "ମହିମା, ଆଉ ଅଧିକ କହି ଆମକୁ ଲାଜ ଦିଅନ୍ତୁ ନାହିଁ । ଏହିଥର ମୁଁ ଗୋଟିଏ କାମ ଦେଉଛି, ଦେଖନ୍ତୁ ସେ କଣ ତା ଚଉଦ ପୁରୁଷ ବି ସେ କାମ କରିପାରିବେନାହିଁ । ମହାରାଜା ତାକୁ ପ୍ରାଣଦଣ୍ଡ ଦେଇ ନିଶ୍ଚିନ୍ତରେ ତା ସ୍ତ୍ରୀକୁ ବିବାହ କରିବେ ।"

ରାଜା ଅଧୁର ହୋଇ ପଚାରିଲେ, "କଣ, କି କାମ ସେଇଟା ?"

ମୁଖ୍ୟମନ୍ତ୍ରୀ ଚପ୍ କିନା ଯାଇ ରାଜାଙ୍କ କାନରେ ଯେପରି ସେ କଥାଟି କହିଦେଇଛନ୍ତି, ରାଜା ଆନନ୍ଦରେ ହସି ପକାଇ କହିଲେ, "ବଢ଼ିଆ, ବଢ଼ିଆ କାମ ହୋଇଛି । ଏଥର ନିଶ୍ଚୟ କେଉଟ ପୁଅର ବୁଦ୍ଧି ହଜିଯିବ । ଆରେ, କିଏ ଅଛରେ, ଶୀଘ୍ର ସେ ଇଲସ୍ୱାସ କେଉଟକୁ ଧରିଆଣ ।"

ରାଜାଙ୍କ ଆଦେଶପାଇ ପିଆଦାମାନେ ଇଲସ୍ୱାସ ଘରକୁ ଧାଇଁଲେ । ପୁଣିଥରେ ରାଜାଙ୍କ ପିଆଦା ଆସିଗଲେ ଦେଖି କର୍ପୂର ସୁନ୍ଦରୀ ସ୍ୱାମୀଙ୍କୁ କହିଲା, "ଦେଖିଲ, ମୋ ଖୋଳପା ପୋଡ଼ ନାହିଁ ବୋଲି ମୁଁ ତୁମକୁ ଥର ଥର କରି ତିନିଥର ମନାକଲି । ତୁମେ ମୋ କଥା ମାନିଲ ନାହିଁ । ମୋ ଖୋଳପା ପୋଡ଼ି ନଥିଲେ ଏତେ ବିପଦ ଆସିନଥାନ୍ତା । ହେଇଟି ଦେଖ, ତୁମ ଉପରକୁ ଭୁତାସ୍ତୁ ବିପଦ ମାଡ଼ିଆସିଲା, ଏଥର କଣ କରିବ କର ।"

ଇଲସ୍ୱାସ କହିଲା, "ଆଗୋ, ମୋର କଣ ଏତେ ବୁଦ୍ଧି ଥିଲା ? ମୁଁ ତୁମକୁ ଜୀବନଠୁ ଅଧିକ ଭଲପାଏ ବୋଲି ଭାବିଲି ଖୋଳପାଟି ଥିଲେ ତୁମେ କାଲେ କର୍ପୂର ହୋଇ ଏଠାରୁ ଚାଲିଯିବ, ତେଣୁ ମୁଁ ସେଇଟାକୁ ପୋଡ଼ିଦେଲି । ଦୋଷ ତ କରିଛି—ସେଥିପାଇଁ ପ୍ରଭୁଙ୍କୁ କ୍ଷମା ମାଗୁଛି । ସେ ମାରିଲେ ମାରିବେ ରଖିଲେ ରଖିବେ—ଯାହା ତାଙ୍କ ଇଚ୍ଛା ।" କର୍ପୂର

ସୁନ୍ଦରୀ କହିଲା, "ହଉ, ଦରବାରକୁ ଆଗ ଯାଅ; ବିପଦ ଆସିଲେ ଦେଖିବା ।"

ଇଲସ୍ୱାସ ସିପାହୀମାନଙ୍କ ସହିତ ରାଜଦରବାରକୁ ଚାଲିଲା । ସେ ଯାଇ ଦରବାରରେ ଠିଆ ହେଉହେଉ ରାଜା ତା'କୁ ଧମକ ଦେଇ କହିଲେ, "ତୁ ଏ ଯେଉଁ ଭୋଜିଦେଲୁ, ମୋ ମନକୁ ପାଇଲା ନାହିଁ । ହଁ, ଲୋକେ ଗାଈ ଗୋରୁ ଭଳିଆ ପେଟ ପୂରାଇ ଖାଇଗଲେ, କିନ୍ତୁ କିଛି ମଜା ପାଇଲେ ନାହିଁ । ଏଥର ତୁ ଗୋଟାଏ କାମ କରିବୁ । ତୁ ଯାଇ ଏପରି ଜଣେ ଲୋକଙ୍କୁ ଆମ ପାଖକୁ ଡାକିଆଣିବୁ ଯେ ନିଜେ ହୋଇଥିବ ବିଘତ୍‌ଖଣ୍ଡେ ଉଚ, କିନ୍ତୁ ତାର ଦାଢ଼ିର ଲମ୍ବ ଥିବ ତିନି ଗଜ୍‌ଖଣ୍ଡେ । କାଲି ସନ୍ଧ୍ୟାପୂର୍ବରୁ ସେ ଲୋକ ଯେପରି ଆମ ଦରବାରରେ ଆସି ପହଞ୍ଚେ । ତାକୁ ଦେଖିଲେ ଆମ ଲୋକେ ଟିକିଏ ହସ ଖୁସି କରିବେ । ତୁ ଯଦି ତାକୁ ଆଣିବାରେ ଡେରି କରିବୁ, ତେବେ ନିଶ୍ଚୟ ଫାଶିକାଠରେ ଝୁଲାଇଦେବି ଜାଣିଥା ।"

ବିଘତ୍‌ଖଣ୍ଡିଆ ମଣିଷର ତିନି ଗଜ୍‌ଖଣ୍ଡିଆ ଦାଢ଼ି—ଏ କଥା ଆଖି କେବେ ଦେଖି ନାହିଁ କି କାନ କେବେ ଶୁଣି ନାହିଁ । ଏପରି ଲୋକ କେଉଁଠି ଅଛି ଯେ ସେ ଧରି ଆଣିବ ? ବିଚରା କାନ୍ଦ କାନ୍ଦ ହୋଇ ସ୍ତ୍ରୀ ପାଖରେ ଆସି ପହଞ୍ଚିଗଲା । କଇଁଚସୁନ୍ଦରୀ ପଚାରିଲେ, "ଏଥର ରାଜା କଣ କହିଲେ ?" ଇଲସ୍ୱାସ ଦୀର୍ଘନିଃଶ୍ୱାସ ମାରି ରାଜାଙ୍କ ଆଦେଶ କଥା କହିଲା । କଇଁଚସୁନ୍ଦରୀ କହିଲା, "କାଲି ସକାଳୁ ତୁମେ ଦରିଆକୁ ଗଲେ ମୋ ସାନଭାଇକୁ ଡାକି ସାଙ୍ଗରେ ନେଇ ଆସିବ । ସେ ଆସିଗଲେ ସବୁ କାମ ହୋଇଯିବ ।" ଇଲସ୍ୱାସ ପଚାରିଲା, "ଆଗୋ ସେ ଆସିଲେ କଣ କରିବ ?" କଇଁଚ ସୁନ୍ଦରୀ କହିଲା, "ତାକୁ ଆଗ ଡାକି ଆଣ, ମୁଁ ତାପରେ କହିବି ।"

ତା ପରଦିନ ସକାଳୁ ସକାଳୁ ଇଲସ୍ୱାସ ଡଙ୍ଗା ସେଇ ସମୁଦ୍ରକୁ ଚାଲିଗଲା । ମଝି ଦରିଆକୁ ଯାଇ ଡାକ ପକାଇଲା, "ହେ କଇଁଚସୁନ୍ଦରୀଙ୍କ ସାନ ଭାଇ, କେଉଁଠି ଅଛ ଶୀଘ୍ର ଆସ, ତୁମ ଭଉଣୀ ଡାକିପଠେଇଛନ୍ତି ।" ସେ ଏପରି ଦୁଇ ଥର ଡାକ ଦେବା ପରେ ତା ପାଖରେ ଭଉଁରି କାଟି କିଏ ସେ ଗୋଟାଏ ଧ୍ୱପ୍‌କିନା ପାଣି ଭିତରୁ ବାହାରିଆସିଲା । ସେ ଲୋକଟାକୁ ଦେଖି ଇଲସ୍ୱାସ ନିଜ ଆଖିକୁ ବିଶ୍ୱାସ କରି ପାରିଲା-ନାହିଁ । ଆଖି ମଳି ପୁଣି ଥରେ ଚାହିଁଦିଏ ତ ଦେଖିଲା ସତରେ ସେ ଗୋଟାଏ ବିଘତ୍‌ଖଣ୍ଡିଆ ମଣିଷ, ତା ମୁହଁରେ ତିନି ଗଜ୍‌ଖଣ୍ଡେ ଲମ୍ବର ଦାଢ଼ି ଝୁଲୁଛି । ସେ ଲୋକଟା ଡଙ୍ଗା ଉପରକୁ ଚଢ଼ିଆସି ଇଲସ୍ୱାସକୁ ପ୍ରଣାମ କରି କହିଲା, "ଭାଇ, କଥା କଣ କି ? ଭାରି ଜୋର୍‌ରେ ମତେ ଡାକ ପକେଇଛ ! ମୋ ଭଉଣୀର ଦେହ ଭଲ ଅଛି ତ ?"

ଇଲସ୍ୱାସ ବୁଝିଗଲା ଯେ ଏହି ଲୋକଟା ହିଁ ତାର ସାନ ଶଳା । ସେ ତାକୁ ଆଦର କରି କହିଲା, "ହଁ ହଁ ତାଙ୍କ ଦେହ ଭଲ ଅଛି । ସେ ତୁମକୁ ଦେଖିବା ଲାଗି ଭାରି ମନକରୁଛନ୍ତି —ସେଥିପାଇଁ ତୁମକୁ ଡକାଇଛନ୍ତି—ଚାଲ ଯିବା ।"

"ନାନୀ ଯେତେବେଳେ ଡାକୁଛି ନ ଯିବି କିପରି ?" କହି ବିଘତ୍‌ଖଣ୍ଡିଆ ଡଙ୍ଗାରେ ବସିପଡ଼ିଲା । ଇଲସ୍ୱାସ ଡଙ୍ଗା ବାହି କୂଳକୁ ଚାଲିଆସିଲା । ଶଳା ଭିଣୋଇ ଦିହେଁ ଆସି

ଘରେ ପହଞ୍ଚି ପହଞ୍ଚି ଇଲସ୍ପାସ ଡାକପକାଇଲା, "ଆଗୋ ଦେଖିଯାଅ, ହେଇଟି ତୁମ ସାନଭାଇ ଆସିଲେଣି ।"

କଅଁଚସୁନ୍ଦରୀ ଦୁଆର ମୁହଁକୁ ଆସି ଭାଇକୁ ଘର ଭିତରକୁ ପାଛୋଟି ନେଲା । ଏତେ ଦିନ ପରେ ଭାଇଭଉଣୀଙ୍କର ଦେଖା । କଅଁଚସୁନ୍ଦରୀ ଓ ଦରିଖଣ୍ଡିଆ କୋଳାକୋଳି ହୋଇ ଦୁଃଖ ସୁଖ ପଚରାପଚରି ହେବା ପରେ କଅଁଚ ସୁନ୍ଦରୀ କହିଲା, "ଦେଖ ଭାଇ, ତୋ ଭଣୋଇ ଭାରି ଅଡୁଆରେ ପଡ଼ିଛନ୍ତି । ଏ ଦେଶ ରାଜା ତାଙ୍କ ଉପରେ ଦାଉ ସାଧିବା ଲାଗି ତାଙ୍କୁ କହିଛନ୍ତି ଯେ ସେ ଠିକ୍ ତୋରି ପରି ଲୋକଟିଏ ନେଇ ଦରବାରରେ ଦାଖଲ କରିବେ । ତୁ ଟିକିଏ ତାଙ୍କ ସାଙ୍ଗରେ ରାଜଦରବାରକୁ ଯା । ତୋ ପରି ଲୋକକୁ ସେ କାହିଁକି ଡକାଇଛନ୍ତି ପଚାରି ବୁଝିବୁ । ହାତରେ ବଡ଼ କରି ଠେଙ୍ଗାଟିଏ ଧରିଥା । ଯଦି ସେ ରାଜା ତୋ ମନକୁ ପାଇଲା ପରି ଉତ୍ତର ଦେଇ ନ ପାରିବେ, ତେବେ ତାଙ୍କୁ ଓ ତାଙ୍କ ଦରବାରର ସମସ୍ତଙ୍କୁ ଆଚ୍ଛା କରି ପାନେ ପାନେ ଦେବୁ ଯେ ସେ କଥା କାଳକାଳକୁ ମନେ ରଖିଥିବେ ।"

ଦରିଖଣ୍ଡିଆ ଠୋ ଠୋ ହସି ପକାଇ କହିଲା, "ଓଃ, ଏଇ କଥା ନା ! ଭାଇ ତା' ହେଲେ ଏଇଥିପାଇଁ ଆତୁର ହୋଇ ମୋତେ ଡାକୁଥିଲେ । କିନ୍ତୁ ମୁଁ ତ ମୋ ଠେଙ୍ଗାଟା ଆଣିନି । ଭାଇଙ୍କର ଏ ଆଣ୍ଠୁଳାଟି ଧରୁଛି । ଏଇଥିରେ ସାବାଡ଼ କରିଦେବି ।" ଏହା କହି ସେ ଇଲସ୍ପାସର ଡଙ୍ଗାରୁ ଆଣ୍ଠୁଳାଟି ଆଣି ଧରିଲା । ଏଥର ଶଳା ଭଣୋଇ ଦୁହେଁ ରାଜାଙ୍କ ଦରବାରକୁ ଚାଲିଲେ । ଇଲସ୍ପାସ ଆଗରେ ଚାଲିଥାଏ, ତା ପଛରେ ଲସରପସର ହୋଇ ଅଣ୍ଡୁଳା ଖଣ୍ଡିକ ଧରି ଦରିଖଣ୍ଡିଆ ଚାଲିଥାଏ । ଏତେ ଟିକିଏ ମଣିଷ—ବେଳେ ବେଳେ ସେ ବାଟର ଘାସ ବୁଦା ଭିତରେ ବି ଲୁଚିଯାଉଥାଏ । ଶଳା କୁଆଡ଼େ ଗଲା ବୋଲି ଭଣୋଇ ଟିକିଏ ହରବର ହେବା ପରେ ଦରିଖଣ୍ଡିଆ ବୁଦା ଭିତରୁ ବାହାରି ପଡ଼େ । ଦୁହେଁ ଯାଇ ରାଜଧାନୀରେ ପହଞ୍ଚିଗଲେ । ଦନରିଖଣ୍ଡିଆ ଦାଢ଼ି ଲମ୍ବାଇ ଦରିଖଣ୍ଡିଆ ଲୋକଟାଏ ଆସିଛି ବୋଲି ଚାରିଆଡ଼େ ହୁରି ପଡ଼ିଗଲା । ହଜାର ହଜାର ସଂଖ୍ୟାରେ ଲୋକ ଆସି ଏ ଦୃଶ୍ୟ ଦେଖିବା ଲାଗି ରାସ୍ତା କଡ଼ରେ ଜୁଣ୍ଡହୋଇଗଲେ । ଦରିଖଣ୍ଡିଆ ଦାଢ଼ି ଘୋଷାରି ବାଡ଼ି ଭିଡ଼ି ଚାଲିଥାଏ । ଏ ସମସ୍ତେ ଯାଇ ଯେତେବେଳେ ରାଜାଙ୍କ ନଅର ପାଖରେ ପହଞ୍ଚିଗଲେ ସେତେବେଳେ ରାଜାଙ୍କ ବୁଦ୍ଧି ବଣା ହୋଇଗଲା । ଇଲସ୍ପାସ ଏପରି ଲୋକଟାଏ ଧରି ଆଣିପାରିବ ବୋଲି ସେ ତ ଭାବି ନଥିଲେ । ସେ କିପରି ତାକୁ ପ୍ରାଣଦଣ୍ଡ ଦେବେ ମନ୍ତ୍ରୀମାନଙ୍କ ସହିତ ବସି ସେହି କଥା ଆଲୋଚନା କରୁଥିଲେ । ବର୍ତ୍ତମାନ ସବୁ ଓଲଟପାଲଟ ହୋଇଗଲା ଦେଖି ସେ ଆବାକାବା ହୋଇ ରହିଛନ୍ତି, ଦରିଖଣ୍ଡିଆ ତାଙ୍କ ସିଂହାସନ ପାଖକୁ ମାଡ଼ିଯାଇ ପଚାରିଲା, "କଣ ରାଜା, ମୋଠାରେ କି କାମ ଅଛି ଯେ ମତେ ଡକାଇଲ ?"

ରାଜା ଏ ପ୍ରଶ୍ନର କି ଉତ୍ତର ଦେବେ କିଛି ବୁଝି ପାରିଲେନାହିଁ । ସେ ଥା ଥା ମା ମା

ହୋଇ ମନ୍ତ୍ରୀଙ୍କୁ ପୁଚ୍ଛିଲେ । ମନ୍ତ୍ରୀ କାନମୁଣ୍ଡା କୁଣ୍ଡାଇ ହେଲେ ଦେଖି ଦରଖଣ୍ଡିଆ ରାଗ ଜମ ଜମ ହୋଇ ପାଟିକଲା, "ଏଇଆ ତୁମ ରାଜାପଣିଆ ? ପ୍ରଜାଙ୍କୁ ଏପରି ହଇରାଣ କରି ତୁମେ ଏଠାରେ ରାଜତ୍ୱ କରିପାରିବ ନାହିଁ । ଗାଦିରୁ ହଟିଯାଅ ।"

ରାଜା ରାଗରେ ନିଆଁ ବାଣ ହୋଇ କହିଲେ, "କିଏରେ ତୁ ଟା ? ତୁ ପୁଣି ମତେ ଏ କଥା କହିପାରୁଛୁ ! ଆରେ କିଏ ଅଛରେ, ବାନ୍ଧିଲ ଏ ଦରଖଣ୍ଡିଆକୁ ।"

ଦରଖଣ୍ଡିଆ କି ଆଉ ଅସ୍ତ୍ର ଧରେ । ସେ ତା ଆଣିଥିଲା ବାଡ଼ି ବୁଲାଇ ରାଜା, ମନ୍ତ୍ରୀ, ପାତ୍ର, କୋଟୁଆଳ, ସୈନ୍ୟ, ସେନାପତି ସମସ୍ତଙ୍କୁ ଏପରି ଆକ୍ରମଣ କଲା ଯେ, ସେହି ମାଡ଼ରେ ଛଟପଟ ହୋଇ ରାଜା ଓ ମନ୍ତ୍ରୀମାନେ ମରିଗଲେ । ଏ ଘଟଣା ଦେଖି ଲୋକମାନେ ଦରଖଣ୍ଡିଆକୁ ପ୍ରଶଂସା କରି କହିବାକୁ ଲାଗିଲେ, "ଦେଶରୁ କଣ୍ଟା ଗଲା, ପାପ ଗଲା । ତୁମେ ଦରଖଣ୍ଡିଆ ହେଲେ କଣ ହେଲା, ତୁମକୁ ଧନ୍ୟ ଧନ୍ୟ କହିବା କଥା ।"

ଦରଖଣ୍ଡିଆ କହିଲା, "ଆହେ ବାବୁ, ମତେ କାହିଁକି ଧନ୍ୟ ଧନ୍ୟ କହୁଛ, ଏ ଯେଉଁ ଇଲିୟାସ ଭାଇ ଠିଆହୋଇଛନ୍ତି ଏସବୁ ଏହାଙ୍କ କରାମତିର ଫଳ ।"

ଲୋକେ ଇଲିୟାସର ଜୟ ଜୟ କରି ତାଙ୍କୁ ନେଇ ରାଜଗାଦିରେ ବସାଇଲେ । ଭଁଚ ସୁନ୍ଦରୀ ସେ ଦେଶର ରାଣୀ ହେବାରୁ ଦେଶରୁ ଦରିଦ୍ର ଲାଗି ଅନଟନ ଛାଡ଼ି ପଳେଇଲା । ଦରଖଣ୍ଡିଆ ଭୟରେ ସେ ଦେଶରେ ଶତ୍ରୁ ପଶି ପାରିଲେ ନାହିଁ ।

## ହାୟରେ ହାୟ !

ଆଉ ଗୋଟିଏ ଗପ ଶୁଣିବ ? ଶୁଣ ।

ଅନେକ ଦିନ ତଳର କଥା । ଗୋଟିଏ ଜଙ୍ଗଲି ଗାଆଁରେ ଜଣେ ବୁଢ଼ୀ ଥାଏ । ବୁଢ଼ୀର ଗୋଟିଏ ବୋଲି ପୁଅ । ତା ନାଆଁ ସ୍ନାନକାଦ । ମାଆ ପୁଅ ବଡ଼ ଅଭାବରେ ଚଳୁଥାନ୍ତି । ଦି ବେଳା ଦି ମୁଠା ଖାଇବାକୁ ବି ପାଆନ୍ତି ନାହିଁ । ଦୁଃଖ କଷ୍ଟରେ ଚଳୁ ଚଳୁ ଶେଷକୁ ଏପରି ଅବସ୍ଥା ଆସିଗଲା ଯେ ଦିନେ ସେମାନଙ୍କୁ ଉପବାସରେ ରହିବାକୁ ପଡ଼ିଲା । ସେଦିନ ବୁଢ଼ୀ ପାହାଡ଼ ତଳ ଜଙ୍ଗଲରେ ବୁଲି ବୁଲି ଦି ମୁଠା କୋଳି ତୋଳି ଆଣିଥାଏ । ସେହି କୋଳି ଦୁଇ ମୁଠା ଖାଇଦେଇ ମଧଏ ମଧଏ ପାଣି ପିଇଦେବା ପରେ ନିଆଁ ପୁଉଁବା ଲାଗି ବସିଗଲେ । ନିଆଁ ପୋଉଁ ପୋଉଁ ବୁଢ଼ୀ ପୁଅକୁ କହିଲା, "ଏ ଗାଆଁରେ ବସିରହିଲେ ପେଟ ପୋଷି ପାରିବୁ ନାହିଁ । ଚାଲ, ତତେ ନେଇ ମୁଁ ସହରରେ ଛାଡ଼ିଦେଇ ଆସିବି । ସେଠି କାମଧନ୍ଦାର ଅଭାବ ନାହିଁ । କେଉଁଠି ହେଲେ ମିସ୍ତ୍ରୀ କି କାରିଗର ରହିଗଲେ ବର୍ଷ କେତୋଟା ଭିତରେ ବିଦ୍ୟାବୁଦ୍ଧି ଶିଖି ନିଜ ଗୋଡ଼ରେ ନିଜେ ଠିଆହୋଇ

ପାରନ୍ତୁ । ହାତରେ ବନ୍ଧାଥିବା ଲୋକର ପେଟ ଅପୋଷା ରହିବନି ।"

ମାଆ କଥାରେ ପୁଅ କାହିଁକି ଅରାଜି ହୁଅନ୍ତା ? ଅଠର ଊଣେଇଶି ବର୍ଷର ଭେଣ୍ଡିଆ ଟୋକା, କାମ କରିବାକୁ ଡରିବ ବା କାହିଁକି ? ତା ପରଦିନ ସକାଳୁ ସକାଳୁ ମାଆପୁଅ ଦହେଁ ପାହାଡ଼ ପଟକୁ ଡେଇଁ ସହର ଆଡ଼କୁ ଚାଲିଲେ । ବାଟରେ ନାନା ଜାତିର ଫଳଫୁଲ ଗଛ ସବୁ ପଡ଼ିଲା । ସେଠାରୁ କିଛି ଫଳମୂଳ ଖାଇ ଚାଲୁଚାଲୁ ସେମାନେ ଆସି ସମୁଦ୍ର କୂଳରେ ପହଞ୍ଚିଲେ । ପାହାଡ଼ର ପଥୁରିଆ ରାସ୍ତା ଗୁଡ଼ା ଦହେ ଆସି ବାଲି ଉପରେ ବସି ଟିକିଏ ହାଲିଆ ମାରୁଛନ୍ତି, ପୁଅ କଥା ଭାବି ବୁଢ଼ୀ ପାଟିରୁ ବାହାରିପଡିଲା, "ଆହା, ମୋ ପୁଅ ଯାଇ କେଉଁଠି ରହିବ କେଜାଣି ! ହାସ୍ୟରେ ହାସ୍ୟ, ମୋ ଦିନ କାଳ କେମିତି କଟିବ ସତେ !"

ବୁଢ଼ୀ ପାଟିରୁ ଏତିକି ବାହାରିଛି କି ନାହିଁ, ତେଣେ ସମୁଦ୍ର ଭିତରେ ଡାଳଗଛିଆ ଲହଡିଟାଏ ଉଠି ସେମାନଙ୍କ ଆଡ଼ ମାଡ଼ିକୁ ଆସିଲା । ଲହଡିଟା ଉପରକୁ ମାଡ଼ି ଆସୁଛି ଦେଖି ଦହେଁ ସମୁଦ୍ର କୂଳକୁ ଲାଗି ରହିଥିବା କୁଦ ଉପରେ ଚଢ଼ିଯିବେ ବୋଲି ପ୍ରାଣ ବିକଳରେ ଧାଇଁଲେ ! ଧାଇଁଛନ୍ତି, ଏ ସମୟରେ ବୁଢ଼ୀ ଶୁଣିଲା ତା କାନ ପାଖରେ କେହି ଜଣେ ଲୋକ କଣ ଗୁଡ଼ାଏ କହିପକାଉଛି । କିଏ ଏପରି କଣ କହୁଛି ବୋଲି ସେ ପଛକୁ ବୁଲି ପଡ଼ି ଚାହିଁ ଦିଏ ତ ଦେଖିଲା ସେ ଡାଳଗଛିଆ ଲହଡିଟା ଗୋଟାଏ ବିରାଟ ମଣିଷ ପରି ମୁହଁ କରି ତା ଉପରକୁ ଝୁଙ୍କିପଡ଼ିଛି । ସେ ଏଡ଼େ ଏଡ଼େ ଆଖି କରି ଚାହିଁଛି । ତା ମୁହଁରେ ପୁଣି ସମୁଦ୍ର ଫେଣରେ ଭରି ମସ୍ତବଡ଼ ଲମ୍ବା ଦାଢ଼ି ଝୁଲୁଛି । ଲୋକଟା ମେଘ ଗର୍ଜନ କଲା ପରି ପାଟି କରି କହିଲା, "ଆଲୋ ମାଉସି, ମୋଠି ତୋର କି କାମ ? ମତେ କାହିଁକି ଡାକିଲୁ ?"

ଏ କଥା ଶୁଣି ବୁଢ଼ୀ ଆବାକାବା ହୋଇ ଚାହିଁ ରହିଲା । ସେ ତ କାହାକୁ ଡାକି ନଥିଲା, ତେଣୁ ତା ଅଜାଣତରେ ତା ପାଟିରୁ ବାହାରିପଡ଼ିଲା, "ହାସ୍ୟରେ ହାସ୍ୟ, ମୁଁ କେତେବେଳେ ଡାକିଲି ?"

ସେ ଲୋକଟା କହିଲା, "ହେଇଟି ତ ପୁଣି ମୋ ନାଆଁ ଧରି ଡାକିଲୁ ।"

"ତୁମରି ନାଆଁ !!"

"ଆଲୋ ମୋରି ନାଆଁ ପରା ହାସ୍ୟରେ ହାସ୍ୟ ।"

ବୁଢ଼ୀ ଆଶ୍ଚର୍ଯ୍ୟ ହୋଇ ପଚାରିଲା, "ହାସ୍ୟରେ ହାସ୍ୟ ! ତୁମେ କିଏ, ମୁଁ କିଏ !!"

ହାସ୍ୟରେ ହାସ୍ୟ କହିଲା, "ମୁଁ ହେଉଛି ସମୁଦ୍ରର ଯାଦୁ ସମ୍ରାଟ । ତୁ କାହିଁକି ଏପରି ମୁହଁ ଶୁଖାଇଦେଇଛୁ ମାଉସି ?"

ବୁଢ଼ୀ ଏଥର ଟିକିଏ ସାହସ ପାଇଲା । କହିଲା, "ହେ ଯାଦୁସମ୍ରାଟ ! ମୋ ଦୁଃଖ କଥା କଣ କହିବି । ଏ ସ୍ୱାନକାସ ମୋର ଏକମାତ୍ର ପୁଅ । ଗାଆଁରେ ଦମୁଠା ଖାଇବାକୁ ନ ପାଇ ତା ଚେହେରା କଣ ହୋଇଗଲାଣି ଦେଖ । ଯାଉଛି ସହରରେ ହେଲେ ପୁଅଟିକୁ କାହା ପାଖରେ ରଖେଇଦେବି, କାମଧନ୍ଦା ଶିଖି ପେଟ ପୋଷିବ । ନେଇ ସିନା ଯାଉଛି, ହେଲେ

ଦୂରରେ ଛାଡ଼ିଦେବାକୁ ମନ କହୁନ । ତୁମେ ମାଆ ହୋଇଥିଲେ ମୋ ଦୁଃଖ ବୁଝନ୍ତ ।"

ହାସ୍ୟରେ ହାସ୍ୟ ସ୍ୱାନକାସର ମୁହଁକୁ ଚାହିଁ ଦାଢ଼ି ଆଉଁଶି ଆଉଁଶି କହିଲା, "ଅଲୋ ମାଉସି, ମୁଁ ସବୁ କଥା ଜାଣିଛି । ଯଦି ମୋ କଥା ରଖିବୁ, ତେବେ କଥାଟିଏ କହିବି ।"

ବୁଢ଼ୀ କହିଲା, "କି କଥା କହୁଛ ?"

"ଟୋକାଟାକୁ ନେଇ କାହିଁକି ମିଛରେ ସହରରେ ଛାଡ଼ିଦେଇ ଆସିବୁ । ବିଦ୍ୟା ଶିଖିବ କଣ, ପର ଦୁଆରେ ଚାକିରି କରିବ କହ । ପର ଦୁଆରେ ଚାକିରି କଲେ କି ବା ସୁଖ ପାଇବ ? ଏ ଯେଉଁ ଚେହେରା ଦେଖୁଛୁ, ଏତକ ଚେହେରା ବି ରହିବ ନାହିଁ । ତାକୁ ବରଂ ମୋ ପାଖରେ ଛାଡ଼ିଦେ । ବୟସ ବେଶି ହୋଇଗଲାଣି । ଯୋଡ଼ାଏ ବର୍ଷ ଭିତରେ ମୁଁ ତାକୁ ସକଳ ବିଦ୍ୟାରେ ପଣ୍ଡିତ କରିଦେବି । ମୋର ଅଭାବ କିଛି ନାହିଁ ମ—ତୋ ପୁଅ ଖୁବ୍ ଆରାମରେ ରହିଯିବ ।"

ବୁଢ଼ୀ ଅଙ୍କେଇ ଅଙ୍କେଇ କହିଲା, "ହେଲେ, ମୁଁ ପୁଣି ମୋ ପୁଅକୁ ଫେରି ପାଇବି ତ ?"

ହାସ୍ୟରେ ହାସ୍ୟ ଖପ୍ପା ହୋଇ କହିଲା, "ଫେରି ପାଇବୁ ନାହିଁ ତ ମୁଁ ଆଉ କଣ ପୁଅଟାକୁ ସବୁଦିନ ମୋ ଘରେ ରଖି ପୋଷିବି । ଗରିବ ବିଚାରୀ, କେତେଟା ବିଦ୍ୟା ଶିଖିଯାଉ ବୋଲି ମୁଁ ଡାକୁଛି । ତୋ ମନରେ ଯଦି କିଛି ସନ୍ଦେହ ଅଛି ତେବେ ଶୁଣ, ଗୋଟାଏ କଥା ରଖ । ଆଜଠୁ ଠିକ୍ ଦୁଇ ବର୍ଷ ପରେ ତୁ ଏହି ସମୁଦ୍ର କୂଳକୁ ଆସି ମୋ ନାଆଁ ଧରି ଡାକିବୁ । ମୁଁ ସେହିଲେଠେ ତୋ ପୁଅକୁ ଆଣି ତୋ ପାଖରେ ଛାଡ଼ିଦେବି ।"

ଯାଦୁସମ୍ରାଟ ହାସ୍ୟରେ ହାସ୍ୟ ପ୍ରସ୍ତାବଟା ସ୍ୱାନକାସ ମାଆ ମନକୁ ପାଇଲା । ସେ ଆଖିରୁ ଲୁହ ପୋଛି ପୋଛି ସ୍ୱାନକାସକୁ ନେଇ ତା ହାତରେ ସମର୍ପି ଦେଲା । ହାସ୍ୟରେହାସ୍ୟ ତା ନାଲଚଦର ଘୋଡ଼ାଇଦେଇ ଗୁହୁଁ ଗୁହୁଁ ସ୍ୱାନକାସକୁ ଧରି ସମୁଦ୍ର ଭିତରେ ପଶିଗଲା । କିଛି ସମୟ ଯାଇଛି କି ନାହିଁ, ସ୍ୱାନକାସ୍ ଦେଖିଲା ସେ ଆସି ଏକ ଅପୂର୍ବ ରାଜ୍ୟରେ ପହଞ୍ଚି ଯାଇଛି । ସେ ରାଜ୍ୟରେ ନାନା ଜାତିର ରଙ୍ଗୀନ ମାଛ ଖେଳି ବୁଲୁଛନ୍ତି । ହୀରା ନୀଳାର ଗଛମାନଙ୍କରେ ମଣିମୁକ୍ତାର ଫୁଲ ଫଳସବୁ ପେନ୍ଥା ପେନ୍ଥା ହୋଇ ଝୁଲୁଛି । ସ୍ୱାନକାସ୍ ସେ ସବୁ ସୁନ୍ଦର ଦୃଶ୍ୟ ଦେଖି ଦେଖି ହାସ୍ୟରେ ହାସ୍ୟ ସାଙ୍ଗରେ ଚାଲିଥାଏ । ଶେଷରେ ହାସ୍ୟରେ ହାସ୍ୟ ତାକୁ ଆଣି ନିଜ ଘରେ ପହଞ୍ଚାଇ ଦେଲା । ସେ ଘରଟା ରାଜମହଲ ଗୋଟାଏ ରାଜନଅର । ସ୍ୱାନକାସକୁ ଖୁଆଇ ପିଆଇ ସାରିବା ପରେ ହାସ୍ୟରେ ହାସ୍ୟ କହିଲା, "ବୁଝିଲୁ, ମତେ ମନ୍ତ୍ର ଯନ୍ତ୍ର ଆସେ । ମୋର ମନ୍ତ୍ର ଯନ୍ତ୍ର ବଳରେ ମୁଁ ଏ ସମସ୍ତ ରାଜ୍ୟରେ ରାଜା । ତୁ ମୋ କଥା ମାନି ଚାଲିବୁ । ଦେଖିବୁ ଅଳ୍ପ କେତେଟା ଦିନ ଭିତରେ ମୁଁ ତତେ ସକଳ ବିଦ୍ୟା ଶିଖାଇଦେବି । ତୁ ଖାଲି ମୁଣ୍ଡ ଝୁଙ୍କାଇ ମନେରଖିପାରିଲେ ହେଲା ।'

ସ୍ୱାନକାସ କହିଲା, "ମୁଁ ଆପଣଙ୍କ କଥା କେବେ ଅମାନ୍ୟ କରିବି ନାହିଁ ।"

ସେହିଦିନଠାରୁ ହାସ୍ୟରେହାସ୍ୟ ସ୍ୱାନକାସକୁ ଜାଦୁ ବିଦ୍ୟା ଶିଖାଇବା ବାହାନାରେ

ନାନା କାମରେ ଲଗାଇଲା । ତାକୁ ଚେଲା କରିବା ବଦଳରେ ଚାକର କରି ରଖିଲା । ହାସ୍ୟରେହାସ୍ୟ ନଅରରେ ତାର ଗୋଟିଏ ଝିଅ ଥାଏ । ଝିଅଟି ସୁନ୍ଦରୀ ବୋଇଲେ ଅତି ସୁନ୍ଦରୀ । କିନ୍ତୁ ସେ ଝିଅଟି ପିଲାଦିନରୁ ସେହି ସମୁଦ୍ର ଭିତରେ ଥାଏ, ତେଣୁ ସେ ଉପର ଦୁନିଆର ବେଶିଲୋକଙ୍କୁ ଦେଖିନଥାଏ । ବର୍ତ୍ତମାନ ସ୍ୱାନକାସର ସରଳ ସୁନ୍ଦର ଚେହେରା ଦେଖି ସେ ଝିଅଟି ମୁଗ୍ଧ ହୋଇଗଲା । ମନେ ମନେ ସ୍ଥିର କରିନେଲା ଯେ ସେ ତାକୁ ହିଁ ପତି କରି ବରଣ କରିବ । ତେଣୁ ସେ ଧୀରେ ଧୀରେ ବାପାଙ୍କ ଅଜାଣତରେ ସ୍ୱାନକାସର ସାଙ୍ଗ ହୋଇଗଲା । ଟିକିଏ ଟିକିଏ କଥାବାର୍ତ୍ତା ହେଉ ହେଉ ଝିଅଟି ସ୍ୱାନକାସକୁ ତା ବାପାଙ୍କର ସବୁ ଗୁପ୍ତକଥା କହିଦେଲା । ଗୁପ୍ତକଥା କଣ କି ବିଦ୍ୟା ବୁଦ୍ଧି ଶିଖାଇ ଦେବା ବାହାନାରେ ହାସ୍ୟରେ ହାସ୍ୟ ସମୁଦ୍ର କୂଳରୁ ଏପରି ଅନେକ ଲୋକଙ୍କୁ ଧରି ଆଣେ । କିଛିଦିନ ପାଖରେ ଚଳାଇବା ପରେ ସେ ଯଦି ଦେଖେ ଯେ ଲୋକଟି ସତରେ ଚାଲାକ ଚତୁର, ତେବେ ନିଜ ମନ୍ତ୍ର ବଳରେ ତା ମୁଣ୍ଡରୁ ବୁଦ୍ଧି ତକ କାଢ଼ି ନେଇ ନିଜ ମୁଣ୍ଡରେ ରଖିଦିଏ ଏବଂ ସେ ଲୋକଟିକୁ ମାଛ କରି ସମୁଦ୍ରରେ ଛାଡ଼ିଦିଏ । ନା ଯଦି ଦେଖେ ଯେ ଲୋକଟା ସେପରି ବୁଦ୍ଧିଆ ନୁହେଁ, ତେବେ ତାକୁ ଚାକର ପରି ରଖି କଣ୍ଟ ପୂରିଗଲେ ନେଇ କୂଳରେ ଛାଡ଼ିଦିଏ । ସ୍ୱାନକାସ କାନରେ ଏତକ ଗୁମର କଥା ପଡ଼ିଯିବା ମାତ୍ରେ ସେ ସତର୍କ ହୋଇଗଲା । ସେ ସେହିଦିନଠାରୁ ନିପଟ ଓଲୁଙ୍କ ପରି ବାହାନା କରିବାକୁ ଲାଗିଲା । ଗୋଟାଏ କାମ କହିଲେ ଅନ୍ୟ ଗୋଟାଏ କାମ କଲା । ହାସ୍ୟରେହାସ୍ୟ ତା ଉପରେ ମନେମନେ ବିରକ୍ତ ହୋଇଗଲା । ତେଣେ ହାସ୍ୟରେହାସ୍ୟର ଝିଅ ସ୍ୱାନକାସକୁ ତା ବାପାଙ୍କର ପୋଥିପତ୍ର ଦେଖାଇ ତାକୁ ମନ୍ତ୍ର ତନ୍ତ୍ର ଶିଖିବାରେ ସାହାଯ୍ୟ କରିଚାଲିଲା ।

କିଛିଦିନ ପରେ ହାସ୍ୟରେହାସ୍ୟ ସ୍ୱାନକାସର ବୁଦ୍ଧି ପରୀକ୍ଷା କରି ବସିଲା । କିନ୍ତୁ ଚେଇଁ ଶୋଇଛି ଯିଏ ତାକୁ ଉଠାଇବ କିଏ ? ସ୍ୱାନକାସ ସବୁ ସମଝି କିଛି ନ ବୁଝିବା ପରି ଥଥା ମାମା ହେଲା । ହାସ୍ୟରେହାସ୍ୟ ଧରିନେଲା ଯେ ଏ ଜଙ୍ଗଲି ଟୋକାଟା ଗୋଟାଏ ନିପଟ ବୋକା । ତେଣୁ ସେ ତାପାଖରେ ନିଜ ବିଦ୍ୟାବୁଦ୍ଧି କିଛି ଗୋପନ ନରଖି ତାକୁ ବରଂ ନିଜର ପାଖ ଟହଲିଆ କରିଦେଲା । ଫଳରେ ସ୍ୱାନକାସ ହାସ୍ୟରେହାସ୍ୟର ସବୁ ବିଦ୍ୟା ବୁଦ୍ଧି ଗୋଟି ଗୋଟି କରି ଶିଖିପକାଇଲା । କାମଦାମ କରିବାକୁ ଆଚ୍ଛା ବୋକାଟାଏ ମିଳିଗଲା ବୋଲି ହାସ୍ୟରେ ହାସ୍ୟ ମନେମନେ ଖୁସିହେଉଥାଏ, ଏଣେ ତା ଝିଅ ଓ ସ୍ୱାନକାସ ନିଜ ଚତୁରତା ଲାଗି ମନଖୁସିରେ ଦିନ କାଟି ଚାଲିଥାନ୍ତି ।

ଦେଖୁ ଦେଖୁ ଦୁଇଟି ବର୍ଷ ବିତିଗଲା । ଠିକ୍ ଦୁଇବର୍ଷ ପୂରିବା ଦିନ ସ୍ୱାନକାସର ମାଆ ଆସି ସମୁଦ୍ର କୂଳରେ ହାସ୍ୟରେହାସ୍ୟକୁ ଡାକିଲା । କଣ୍ଟ ପୂରିଗଲା ଦେଖି ହାସ୍ୟରେହାସ୍ୟ ସ୍ୱାନକାସକୁ ଆଣି କୂଳରେ ଛାଡ଼ିଦେଇ କହିଲା, "ବୁଝିଲୁ ମାଉସି, ତୋ ପୁଅଟି ନିପଟ ଓଲୁ । ମୁଁ ତାକୁ କିଛି ବୋଲି କିଛି ଶିଖାଇ ପାରିଲି ନାହିଁ ।" ଦୀର୍ଘ ଦୁଇବର୍ଷ ପରେ ପୁଅକୁ ଦେଖିବାକୁ ପାଇଥିବାରୁ ବୁଢ଼ୀ ପୁଅକୁ କୋଳକୁ ଟାଣିନେଇ ହାସ୍ୟରେ ହାସ୍ୟକୁ କହିଲା,

"ହେଉ ଧର୍ମାବତାର, ଯେଉଁଟା କରିବାକୁ ଚାହୁଁଛନ୍ତି ସେଇ ଯଥେଷ୍ଟ ।"

ସମୁଦ୍ର କୂଳରୁ ବାହାରି ମାଆ ପୁଅ ଦୁହେଁ ସହର ଆଡ଼କୁ ଗଲେ । ବାଟରେ ପୁଅ ମାଆକୁ କହିଲା, "ମାଆ, ହାସ୍ୟରେହାସ୍ୟ ଯିଏ ମୋତେ ବୋକା ବୋଲି କହିଲେ, ହେଲେ ମୁଁ ବୋକା ନୁହେଁ । ସେ ଯାଦୁଵାଲା ଖାଲି ସ୍ୱାର୍ଥପର; ମୁଁ ଯଦି ତା ଆଗରେ ମୋର ଚତୁରପଣ ଦେଖାଇଥାନ୍ତି, ତେବେ ସେ ଆଉ ମତେ ଛାଡ଼ନ୍ତା ନାହିଁ । ମୁଁ ବୋକା ବୋଲି ବାହାନା କରି ତା ଯାଦୁବିଦ୍ୟା ସବୁ ଶିଖିପକାଇଛି ।"

ପୁଅ କଥା ଶୁଣି ବୁଢ଼ୀ ଖୁସିହୋଇଗଲା । ଦୁହେଁ ଆସି ସହର ମୁଣ୍ଡରେ ଥିବା ଗୋଟିଏ ବଡ଼ ପଡ଼ିଆରେ ପହଞ୍ଚୁ ପହଞ୍ଚୁ ସ୍ୱାନକାସ ମୁଣ୍ଡକୁ ଗୋଟିଏ ବୁଦ୍ଧି ଆସିଗଲା । ସେ ତା ମାଆକୁ କହିଲା, "ମାଆ, ମୁଁ ଯାଦୁ ବଳରେ ଗୋଟିଏ ବଡ଼ ରାଜମହଲ ହୋଇଯାଉଛି । ସେ ରାଜମହଲ ସିଂହଦ୍ୱାରରେ ଗୋଟିଏ ତାଲା ପଡ଼ିଥିବ; ଚାବି ସେଇ ତାଲାରେ ଲଗିଥିବ । ତୁ ସେ ଚାବିଟା ଆଣି ଅଣ୍ଟାରେ ଖୋସିଦେଇ ଫାଟକପାଖରେ ବସିଥିବୁ । ଯିବା ଆସିବା ଲୋକଙ୍କ ହାତରେ ସହରକୁ ଖବର ପଠାଇଦେବୁ ଯେ ରାଜମହଲଟି ବିକ୍ରି ହେବ । ଦେଖିବୁ ନିଶ୍ଚୟ ଖରିଦାର ଆସିଯିବେ । ଭଲ ଦାମ୍ ପାଇବା ମାତ୍ରେ ବିକିଦେବୁ, କିନ୍ତୁ ହୁସିଆର—ସେ ଚାବିଟି ଜମା ଦେବୁ ନାହିଁ । ତୋ ହାତରୁ ଚାବି ଚାଲିଗଲେ ମୁଁ ଆଉ ନିଜ ଦେହ ଧରିପାରିବି ନାହିଁ ।"

ବୁଢ଼ୀ କହିଲା, "ନାହିଁରେ ବାପ, ମୁଁ କାହିଁକି ସେ ଭୁଲ କରିବି ? କହିବି ଚାବିଟା ହଜି ଯାଇଛି ।"

"ବେଶ୍ ବେଶ୍; ହଜିଯାଇଛି ବୋଲି କହିଦେଲେ କାମ ଶେଷ ।"—କହି ସ୍ୱାନକାସ ଯାଦୁ ବଳରେ ଗୋଟିଏ ସୁନ୍ଦର ରାଜମହଲ ହୋଇଗଲା । ସେ ମହଲର ଚାରିଆଡ଼େ ବଡ଼ ବଡ଼ ଝରକା, କବାଟ ଓ ତୋରଣରେ ପୁଷ୍ପ ହୋଇଥାଏ ଓ ସଜାହୋଇଥାଏ । ମହଲ ଚାରିପଟେ ଫୁଟିଥାଏ ନାନା ଜାତିର ରଙ୍ଗବେରଙ୍ଗ ଫୁଲ । ସ୍ୱାନକାସର ମାଆ ସିଂହଦ୍ୱାରରେ ପଡ଼ିଥିବା ତାଲାର ଚାବିଟି ଆଣି ଅଣ୍ଟାରେ ଖୋସିଦେଲା । ତା ପରେ ଫାଟକ ପାଖରେ ବସି ଯିବା ଆସିବା କରୁଥିବା ଲୋକଙ୍କ ହାତରେ ମହଲଟି ବିକ୍ରି କରିଦେବ ବୋଲି ସହରକୁ ଖବର ପଠାଇ-ଦେଲା । ଦିନେ ଦୁଇଦିନ ଭିତରେ ଏ ନୂଆ ମହଲ ବିଷୟରେ ସହରରେ ସମସ୍ତେ ବୁଝାବୁଝି ହେବାକୁ ଲାଗିଲେ । କେତେ ବଣିକ ମହାଜନ ଆସି ମହଲଟି କିଣିବା ଲାଗି ପ୍ରସ୍ତାବମାନ ଦେଲେ । ଶେଷକୁ ଜଣେ ଧନୀ ମହାଜନ ଆସି ଧରିବସିଲେ ଯେ ଯେତେ ଦାମ୍ ପଡ଼ିବ ପଡ଼ୁ, ସେ ନିଶ୍ଚୟ ସେଇ ମହଲଟି କିଣିବେ । ବୁଢ଼ୀକୁ ଭଲ କାରବାର କରିଆସେ । ଏ ଗୋଟାଏ ମଉକା ମିଳିଛି ଦେଖି ସେ କହିଲା, "ଦଶବସ୍ତା ସୁନା ମୋହର ପାଇଲେ ମହଲଟି ଦେଇ ଦେବି ।"

ଧନୀ ମହାଜନ ସଙ୍ଗେ ସଙ୍ଗେ ଲୋକ ପଠାଇ ନିଜ ଗନ୍ତାଘରୁ ଦଶବସ୍ତା ସୁନାମୋହର ଆଣାଇଦେଲା । ବୁଢ଼ୀ ମହଲଟି ବିକିଦେଇ ମୋହରତକ ଖଣ୍ଡିଏ ଗାଡ଼ିରେ ଲଦି ପଳାଇ

ଯିବାକୁ ବସିଛୁ, ବଣିକ ଦେଖିଲା ଯେ ମହଲ ସିଂହଦ୍ୱାରରେ ତାଲାପଡ଼ିଛି । ସେ ବୁଢ଼ୀକୁ ଡାକପକାଇଲେ, "ବୁଢ଼ୀ ଦୁଆରେ ତାଲା ପକାଇ ପଳାଇ ଯାଉଛ; ଗୁରୁଡ଼ା ଦେଇଯାଅ ।"

ବୁଢ଼ୀ ତରତର ହୋଇ ଦେହମୁଣ୍ଡ ଅଣ୍ଡାଳା ଅଣ୍ଡାଳ କରି କହିଲା, "ଆହେ ମହାଜନ, ମୁଁ ଏବେ କରେ କଣ –ଗୁରୁଡ଼ା କାହିଁ ପାଉନି । କେଉଁଠି ପଡ଼ିଗଲା କି କଣ ।"

ଧନୀ ମହାଜନ ବୁଢ଼ୀକୁ ଆଶ୍ୱାସନା ଦେଇ କହିଲେ, "ହଉ, ହଉ; ତୁମେ ବ୍ୟସ୍ତ ହୁଅନି । ମୁଁ ଏ ତାଲାଟି ଭାଙ୍ଗି ଗୋଟିଏ ନୂଆ ତାଲା ଆଣି ପକାଇବି ।" ବୁଢ଼ୀ ମନେ ମନେ ଖୁସି ହୋଇ ତା ଯିବା ବାଟରେ ଚାଲିଗଲା । ମହାଜନ ତାଲା ଭାଙ୍ଗି ଘରେ ପଶିଲା । ଘର ଭିତରେ ଭଲକଭଲ ଖଟ ପଲଙ୍କ ପଡ଼ିଥାଏ । ସେ ଗୋଟିଏ କଢ଼ିଆ ଗଦିବାଲା ଖଟରେ ଗୁଡ଼ାତାତ ମେଲାଇ ଏପରି ନିଘୋଡ଼ ନିଦରେ ଶୋଇ ପଡ଼ିଲା ଯେ କେତେବେଳେ ରାତି ପାହି ସକାଳ ହେଲା ଜାଣିପାରିଲାନାହିଁ । ଯେତେବେଳେ ନିଦ ଭାଙ୍ଗିଲା, ସେ ଚାହିଁ ଦେଖେତ ମହଲ ଫହଲ କିଛି ନାହିଁ । ସେ ଶୋଇଥିବା ଗଦିବାଲା ପଲଙ୍କଟି ବି କେଉଁଆଡ଼େ ଉଭାନ ହୋଇଯାଇଛି, ସେ ଆସି ଶୋଇଛି ପଡ଼ିଆରେ ପଡ଼ିଥିବା ବଡ଼ାଏ ଶୁଖିଲା ଘାସ ଉପରେ । ଅବସ୍ଥା ଦେଖି ସେ ଦୁଃଖରେ କହି ଉଠିଲା, "ହାସ୍ୟରେ ହାସ୍ୟ ! ଏ କି ହେଲା !! ହାସ୍ୟରେ ହାସ୍ୟ !!"

ସେତିକି ବେଳକୁ କଣ ହୋଇଥାଏ ନା ଯାଦୁମନ୍ତ୍ରୀ ହାସ୍ୟରେହାସ୍ୟ ସେହି ସହରକୁ ବୁଲିଆସିଥାଏ । ତା ନାଆଁ ଶୁଣିବା ମାତ୍ରେ ସେ ଦାଉିକିନା ଯାଇ ଗୋଟିଏ ବୁଢ଼ା ରୂପରେ ମହାଜନ ପାଖରେ ପହଞ୍ଚିଗଲା । ପଚାରିଲା, "କହୋ ମହାଜନେ, ଏଠି କଣ ଶୁଖିଲା ଘାସ ଉପରେ ଶୋଇ ବିକଳରେ ରଡ଼ି ଛାଡୁଛ ?"ମହାଜନ ତା ଦୁଃଖ କଥା ଶୁଣାଇ କହିଲା,"ଆରେ ଭାଇ, ମୋ ଦୁଃଖ କଥା କଣ କହିବି । ଗତ କାଲି ସନ୍ଧ୍ୟାରେ ଏ ପଡ଼ିଆରେ ଗୋଟିଏ ରାଜମହଲ ଠିଆହୋଇଥିଲା ।" ହାସ୍ୟରେହାସ୍ୟ ଚମକିପଡ଼ି କହିଲା, "ଏଁ !"

ମହାଜନ ବିଶ୍ୱାସ ଦେଇ କହିଲା, "ସତକହୁଛି, ବଡ଼ ସୁନ୍ଦର ମହଲଟି ହୋଇଥାଏ; ଦୋଷ ଭିତରେ ଏତିକି ଥିଲା ଯେ ସିଂହଦ୍ୱାରରେ ପଡ଼ିଥିବା ତାଲାଟାର ଗୁରୁଡ଼ା ସେ ମାଲିକଆଣୀ ହଜାଇଦେଇଥାଏ । ମୁଁ ବଡ଼ ଲୋଭରେ ପଡ଼ି ବହୁ ଦାମ୍ କଷାକଷିରେ ଦଶ ବସ୍ତା ସୁନାମୋହର ଦେଇ ମହଲଟି କିଣିନେଲି । ସେ ତାଲା ଭାଙ୍ଗି କାଲି ଗୋଟାଏ ରାତି ମୁଁ ଶୋଇଛି, ହେଇଟି ସକାଳ ହେବା ବେଳକୁ ଅବସ୍ଥା ଏଇଆ । କାହିଁ ସେ ମହଲ ନାହିଁ କି ସେ ଗଦି ନାହିଁ । ମୋର ଏତେ ଧନ ବରବାଦ ହୋଇଗଲା; ମୁଁ ଏବେ କରେ କଣ । ହାସ୍ୟରେ ହାସ୍ୟ !!"

ମହାଜନଠାରୁ ଏତିକି ଶୁଣି ହାସ୍ୟରେହାସ୍ୟ ସବୁକଥା ଜାଣିପକାଇଲା । ସେ ମନେ ମନେ ସ୍ୱାନକାସ ଉପରେ ରକ୍ତଗୁଡ଼ାଇ ଟେକିବାଇ ମହାଜନକୁ କହିଲା, "ଆଉ ଭାବିବ କଣ ! ନେଡ଼ି ଗୁଡ଼ ତ କହୁଣିକୁ ବୋହି ଗଲାଣି,"ଏଥର ଅଣ୍ଟା ଧୋଉଥାଅ ଗୁଣ ଗାଉଥାଅ ।" ମହାଜନ ହାସ୍ୟରେହାସ୍ୟ ହେଉଥାଏ, ହାସ୍ୟରେହାସ୍ୟ ସ୍ୱାନକାସକୁ ଖୋଜିବାକୁ ବାହାରିଲା । ଯାଉ ଯାଉ

କହିଲା, "ଆରେ ବଦମାସ୍ ସ୍ବାନକାସ, ତୁ ତାହେଲେ ସତରେ ବୋକା ନୋହୁ ! ଅଚ୍ଛା, ଦେଖିବା ତୋ କରାମତି କେତେ ; ମୁଁ ଏଇଲାଗେ ତୋ ଯାଦୁଗରି ଛଡ଼ାଇଦେଉଛୁ ।"

ତେଣେ କଣ ହୋଇଥାଏ ନା ମହାଜନ କପୋଡ଼ ନିଦରେ ଶୋଇଥିବା ବେଳେ ସ୍ୱାନକାସ ତା ନିଜ ରୂପ ଧରି ସେଠାରୁ ପଳାଇଯାଇ ତା ମାଆ ପାଖରେ ପହଞ୍ଚିଯାଇଥାଏ । ସକାଳ ହେଉ ହେଉ ଧନ ଉପାର୍ଜନ ଲାଗି ସେ ଆଉ ଗୋଟାଏ ଯୋଜନା ବାଢ଼ିଦେଲା । ମାଆକୁ କହିଲା, "ମାଆ, ମୁଁ ଯାଉଛୁ ଗୋଟିଏ କାଳିଆ ଘୋଡ଼ା ହୋଇଯିବି । ମୋ ଉପରେ ଗୋଟିଏ ସୁନାର ଜିନ୍ ପଡ଼ିଥିବ । ତୁ ମତେ ନେଇ ବିକ୍ରି କରିବା ଲାଗି ସହର ଭିତରେ ବୁଲିବୁ ।"

ପୁଅ କଥାକୁ ତାରିଫ କରି ମାଆ କହିଲା, "ପ୍ରଥମ ଦଫାରେ ତ ଆମକୁ ତିନି ବସ୍ତା ସୁନା ମୋହର ମିଳିଯାଇଛି । ଏଥର ବି ଗୁଡ଼ାଏ ଧନ ମିଳିଯିବ । ଆମର ଆଉ ଅଭାବ ରହିବନାହିଁ । ସତରେ ଖୁବ୍ ଭଲ ହେବ, କିନ୍ତୁ ତୁ ପୁଣି ନିଜରୂପ ଧରିବୁ କିପରି ?" ସ୍ୱାନକାସ କହିଲା, "ଶୁଣ, ତୁ ଘୋଡ଼ା ବିକିବୁ, କିନ୍ତୁ ଜିନଟାକୁ ମୋଟେ ହାତଛଡ଼ା କରିବୁ ନାହିଁ । ସୁନା ଜିନଟା ଯଦି ଦେଇଦେବୁ, ତେବେ ମୁଁ ଆଉ ନିଜରୂପ ଫେରି ପାଇବିନାହିଁ ।"

ବୁଢ଼ୀ କହିଲା, "ଏପରି କଥା ନା ? ମୁଁ ତାହେଲେ ଯେତେ ଦାମ୍ ମିଳିଲେ ବି ଜିନ୍‌ଟା ବିକିବି ନାହିଁ ।" ସଙ୍ଗେ ସଙ୍ଗେ ସ୍ୱାନକାସ୍ ଯାଦୁବଳରେ ଗୋଟିଏ ସୁନ୍ଦର କାଳିଆ ଘୋଡ଼ା ହୋଇଗଲା । ତା ମୁଣ୍ଡରେ ଗୁନ୍ଦିଟିଏ ଥାଏ ; ପିଠିରେ ସୁନା ଜିନ ପଡ଼ି ରୂପାର ଲଗାମ୍ ଲାଗିଥାଏ । ସେ ଘୋଡ଼ା ଦେଖିଲେ ରଜାପୁଅ ବି ଲୋଭ କରିବ । ବୁଢ଼ୀ ଘୋଡ଼ାଟି ନେଇ ବିକିବ ବୋଲି ସହରରେ ବୁଲିଲା । ସେ ଘୋଡ଼ା ନେଇ ବଜାରକୁ ଯାଉଛି, ଏତିକିବେଳେ ହାସ୍ୟରେହାସ୍ୟ ଯାଇ ତା ପାଖରେ ପହଞ୍ଚିଗଲା । ଘୋଡ଼ାଟା ଦେଖୁ ଦେଖୁ ସେ ସ୍ୱାନକାସକୁ ଚିହ୍ନି ପକାଇ ନିଜକୁ ଜଣେ ସୌଦାଗର କରିପକାଇଲା ! ଲୋକ ଗହଳି ଭାଙ୍ଗି ସେ ବୁଢ଼ୀ ପାଖକୁ ଯାଇ ପଚାରିଲା, "ବୁଢ଼ୀ, ଏ ଘୋଡ଼ାଟି କେତେରେ ବିକିବ ?"

ବୁଢ଼ୀ କହିଲା, "କୋଡ଼ିଏ ହଜାର ମୋହରରୁ କମରେ ଦେବିନି ।" ହାସ୍ୟରେ-ହାସ୍ୟ ମହାଜନିଆ ଢଙ୍ଗରେ କହିଲା, "କଣ ବିକି ଆଣିଛ ନା ଦେଖେଇବାକୁ ଆଣିଛ ? ଘୋଡ଼ାଟା ଭଲ ହୋଇଛି, ହେଲେ ଇଏ କି ଜିନ କି ଲଗାମ ଯେ ଏତେ ଦାମ୍ ହାକୁଛ ? ଠିକ୍ କେତେ ହେବ କହ ।" ବୁଢ଼ୀ କହିଲା, "ଜିନ୍ ବିକିହବନି ମହାଜନେ, ଖାଲି ଘୋଡ଼ା ଦାମ କୋଡ଼ିଏ ହଜାର ।"

"ଏଁ, ଜିନ୍ ନଥାଇ ଘୋଡ଼ା କିଏ କିଣିବ ? କୋଡ଼ିଏ ଛାଡ଼ ଏ ପଚିଶ ହଜାର ନିଅ, ହେଲେ ଜିନ୍‌ଟା ଦେବାକୁ ପଡ଼ିବ ।" "ନାହିଁ ଲୋ ବାପ ! ଜିନ୍ ବିକ୍ରି କରିବି ନାହିଁ," କହି ବୁଢ଼ୀ ଚେହେଁକି ଉଠିଲା । କିନ୍ତୁ ବୁଢ଼ୀର ବାରଣ ନମାନି ହାସ୍ୟରେହାସ୍ୟ ଜିନ୍ ପରୀକ୍ଷା କରିବା ଲାଗି ହାତ ବଢ଼ାଇଦେଲା । ଏ ଭିତରେ ସ୍ୱାନକାସ ହାସ୍ୟରେହାସ୍ୟକୁ

ଚାହିଁ ପାରିଥାଏ । କେଣୁ ଜଳ ଉପରେ ତା ହାତ ନପଡୁଣୁ ସ୍ୱାନକାସ ଡ଼ିଆଁଟିଏ ମାରି ସେଠାରୁ ପବନ ବେଗରେ ଛୁଟି ପଳାଇଲା । ହାସ୍ୟରେହାସ୍ୟ କ ଆଉ ସେଠାରେ ସ୍ଥିର ହୋଇ ରହେ । ସେ ବି ଲୋକଗହଳ ଭିଙ୍ଗି ନିଜ ଯାଦୁ ବଳରେ ପବନଠାରୁ ଅଧିକ ବେଗରେ ଘୋଡ଼ା ପଛରେ ଦୌଡ଼ିଲା । ଘୋଡ଼ା ବେଶରେ ଥିବା ସ୍ୱାନକାସ ଯହିଁର ପାରି ନହେଉଣୁ ହାସ୍ୟରେହାସ୍ୟ ତା ବେକର ଲମ୍ବା ବାଳ ଉପରେ ହାତ ପକାଇଦେଲା । କିନ୍ତୁ ଶେଷ, ହାତରେ ଧରି ନଦେଇ ସ୍ୱାନକାସ ସେହି ମୁହୂର୍ତ୍ତରେ ଗୋଟିଏ ପାରି ହୋଇ ସେଠାରୁ ଫୁର୍‌ରିକିନା ଉଡ଼ିଗଲା । ହାସ୍ୟରେ ହାସ୍ୟ ପାଟିକରି ଉଠିଲା, "ଏଁ !! ତୁ ତାହାହେଲେ ଭାବିଛୁ ମୋ ହାତରୁ ଖସିଯିବୁ ନା ? ଦେଖ୍ ମୁଁ ତତେ କିପରି ଧରୁଛି ।"

ପରି ମୁହୂର୍ତ୍ତରେ ହାସ୍ୟରେହାସ୍ୟ ଗୋଟାଏ ଛଞ୍ଚାଣ ହୋଇ ପାରିବେଶରେ ଥିବା ସ୍ୱାନକାସକୁ ଗୋଡ଼ାଇବାକୁ ଲାଗିଲା । ତା ହାତରୁ ଆଉ ରକ୍ଷା ପାଇବା ସହଜ ନୁହେଁ ଦେଖି ସ୍ୱାନକାସ ତଳକୁ ଉଡ଼ିଆସିଲା ଏବଂ ଆଖି ପିଛୁଳାକେ ପାରିବେଶ ଛାଡ଼ିଦେଇ ଗୋଟିଏ ପଥର ତଳେ ଶିଉଳି ଫୁଲଟିଏ ହୋଇ ଲୁଚିଗଲା । ହାସ୍ୟରେହାସ୍ୟ ଛାଡ଼ିବା ଲୋକ ନୁହେ । ସେ ବି ସଙ୍ଗେ ସଙ୍ଗେ ନିଜ ଛଞ୍ଚାଣ ବେଶ ଛାଡ଼ି ଗୋଟିଏ ଗଉଡ଼ ଟୋକା ହୋଇଗଲା । ସେ ଗଉଡ଼ ଟୋକା ପଥର ପାଖକୁ ଆସି ଶିଉଳି ଫୁଲଟି ଛିଣ୍ଡାଇନେଲା; କିନ୍ତୁ ସେ ଫୁଲଟିକୁ ହାତରେ ଦଳିଚକଟି ନଷ୍ଟ କରି ଦେବାକୁ ଯାଉଛି, ସ୍ୱାନକାସ ଗୋଟିଏ ମାଣ୍ଡିଆ ହୋଇ ତା ଅଙ୍ଗୁଠି ସନ୍ଧିବାଟେ ତଳକୁ ଗଳିପଡ଼ିଲା । ଗୋଡ଼ ବାଲି ଭିତରୁ ମାଣ୍ଡିଆଟି ଖୋଜି ହେବ ନାହିଁ ଦେଖି ହାସ୍ୟରେହାସ୍ୟ ଗଉଡ଼ ଟୋକା ରୂପ ଛାଡ଼ି ଗୋଟାଏ କୁକୁଡ଼ା ହୋଇଗଲା । କୁକୁଡ଼ା ମାଣ୍ଡିଆଟିକୁ ଖୁମ୍ପି ଖାଇ ଦେବାକୁ ଯାଉଛି, ଏ ସମୟରେ ସ୍ୱାନକାସ ଗୋଟିଏ ଭେରେଣ୍ଡା ବିଲୁଆ ହୋଇ ତା ଉପରକୁ ଖପ୍ କିନା କୁଦିପଡ଼ିଲା । ହାସ୍ୟରେହାସ୍ୟ ଆଉ ଯାଏ କୁଆଡ଼େ ? ଭେରେଣ୍ଡା କୁକୁଡ଼ାକୁ ମୋଡ଼ି ଖାଇଯିବା ସଙ୍ଗେ ସଙ୍ଗେ ହାସ୍ୟରେହାସ୍ୟର ପ୍ରାଣବାୟୁ ଉଡ଼ିଗଲା ।

ତାପରେ ? ତା'ପରେ···ଆଉ କଣ ହେଲା ଜାଣିପାରୁନା ? ଶୁଣ କହୁଛି । ତାପରେ ସ୍ୱାନକାସ ତା ବୁଢ଼ୀମାଆ ପାଖକୁ ଯାଇ ସବୁକଥା କହିଲା । ବୁଢ଼ୀ ଖୁସିରେ ପୁଅକୁ କୁଣ୍ଢେଇପକାଇ କହିଲା, "ଆମର ତ ଏତେ ଧନ ସମ୍ପଦ ହେଲଣି, ଆଉ ଚିନ୍ତା କଣ ? ତୁ ଏଥର ବାହାହୋଇପଡ଼; ବୋହୂ ଆସିଲେ ଘର କାମ କରିବ, ମୁଁ ଟିକିଏ ଆରାମରେ ବସିବି ।" ମାଆ କଥା ଶୁଣି ସ୍ୱାନକାସ ତା ଯାଦୁବଳରେ ସମୁଦ୍ର ତଳକୁ ଯାଇ ହାସ୍ୟରେ-ହାସ୍ୟର ଝିଅକୁ ନେଇଆସିଲା । ବଡ଼ ଜାକ ଜମକରେ ସେ ଦୁହିଁଙ୍କର ବାହାଘର ହେଲା ।

---

# କୃତ୍ତିକା ଓ କୁଆଁ ତାରା

ଜଣେ ରାଜା ଥିଲେ ଯେ ତାଙ୍କର ଗୋଟିଏ ଝିଅ ଛଡ଼ା ଆଉ କିଛି ସନ୍ତାନସନ୍ତତି ନଥାନ୍ତି । ଝିଅଟି କିନ୍ତୁ ଅତି ସୁନ୍ଦରୀ, ତେଣୁ ରାଜା ରାଣୀ ତାକୁ ବଡ଼ ଆଦରରେ ନାଆଁ ଦେଇଥାନ୍ତି କୃତ୍ତିକା । ସେହି ନସ୍ଥନପିଜୁଳା ସୁନାନାକୀ ଝିଅଟିକୁ ବାପାମାଆ ଦଣ୍ଡେ ନ ଦେଖିଲେ ଉଚ୍ଛନ୍ନ ହୋଇଯାଆନ୍ତି । କୃତ୍ତିକା ଯେତେ ବଡ଼ ହେଲା ସେତେ ତା ଦେହର ରଙ୍ଗ ଫୁଟିଲା । ତାର ନୀଳ ଚକଚକ ଆଖି, ତାର ମୁଣ୍ଡର ଭଲାଭଅଁରର ବାଳ ଆଉ ତା ଦେହର ଚମ୍ପାଫୁଲିଆ ରଙ୍ଗ ଦେଖିଲେ ଯେ କେହି ଲୋଭକରିବ । ଝିଅଟି ଆଦର ଯତ୍ନରେ ବଢ଼ିଲା ସତ, ହେଲେ ବାର୍‌ବର୍ଷ ବୟସ ନ ହେଉଣୁ, ତା ମାଆକୁ କ ରୋଗ ଧରିଲା କେଜାଣି ଦିନ କେତୋଟା ଭିତରେ ସେ ମରିଗଲେ । ରାଣୀ ମରିଯିବାରୁ ରାଜା ଆଉ ଗୋଟିଏ ରାଜ୍ୟର ବିଧବା ରାଣୀକୁ ବିବାହ କଲେ । ନୂଆ ରାଣୀଙ୍କର ଆଗ ସ୍ୱାମୀଙ୍କ ଆଡ଼ୁ ଗୋଟିଏ ପୁଅ ଥାଏ । ପୁଅଟି ଏହି କୃତ୍ତିକା ବୟସର । ସେ ବି ରୂପରେ ଯେପରି ଗୁଣରେ ସେପରି । ତା ନାଆଁ କୁଆଁ ତାରା । କୃତ୍ତିକା ସହିତ କୁଆଁ ତାରାର କି ମୁହୂର୍ତ୍ତରେ ଦେଖାହୋଇଥିଲା କେଜାଣି, ସେହି ମୁହୂର୍ତ୍ତରୁ ଦହେଁ ଦହିଁଙ୍କି ଏପରି ଭଲପାଇ ବସିଲେ ଯେ ଏକ ଆରେକକୁ ନ ଦେଖିଲେ ବାଡ଼ୁଳ ହୋଇଗଲେ । ସାବତ ଭାଇ ଭଉଣୀ ହେଲେ କଣ ହେଲା, ଏକା ମାଆ ପେଟର ଭାଇଭଉଣୀଠାରୁ ଅଧିକ ଆପଣାର ହୋଇ ଚଲଲେ ।

କିନ୍ତୁ ଭାଇଭଉଣୀ ସିନା ଏପରି ସ୍ନେହରେ ବାନ୍ଧହୋଇଗଲେ, ହେଲେ ସାବତ ଏ ମାଆ କୃତ୍ତିକାର ଶିଶ୍ରୀ ଦେଖିପାରିଲା ନାହିଁ । କୃତ୍ତିକାର ରୂପ ଦେଖିଲେ ସାବତ ମାଆର ନାହି ତେଉଁଲା । ସାବତ ଝିଅର ସୁନ୍ଦର ମୁହଁ ସୁନ୍ଦର କେଶ ଦେଖିଦେଲେ ନୂଆରାଣୀ ଦେହରେ ନିଆଁ ଲଗିଗଲା । ସେ ଖାଲି ଭିତରେ ଭିତରେ କୁହୁଳିବାକୁ ଲାଗିଲା । କଣ କଲେ ଝିଅଟାକୁ ନଅରରୁ ଅନ୍ତର କରିଦେବ, ସେ ଦିନରାତି ସେହି ଷଡ଼ଯନ୍ତ୍ର କରିବାକୁ ଲାଗିଲା । କୃତ୍ତିକାର ତିଳକର ଦୋଷ ଦେଖିଲେ ନୂଆରାଣୀ ରାଜାଙ୍କ ଆଗରେ ତାଳ କରି କହିଲା । ତାକୁ ଦୁଇବେଳା ଦୁଇମୁଠା ଭଲକରି ଖାଇବାକୁ ନଦେଇ ଦିନରାତି ଘରକରଣୀ ସବୁ ଖଟାଇଲା । କିନ୍ତୁ ଦଇବ ଭିଆଣ, କେ କରିବ ଆନ—ଏତେ କଷ୍ଟରେ ରହିବି କୃତ୍ତିକାର ରୂପରଙ୍ଗ ମଉଳିଲା ନାହିଁ ।

ଶେଷକୁ ନୂଆରାଣୀ ଦିନେ ରାଜାଙ୍କୁ କହିଲା, "ମଣିମା, ଏ ଅଗୁଣର ଝିଅଟାକୁ ଖୋଇ-ପେଇ ନଅରରେ ପୋଷି ଆମର ଲଭ କଣ କହିଲେ ? ମୁଁ କହୁଛି, ତାକୁ ନେଇ ହାଟରେ ବରଂ ବିକଦେଲେ ଆମକୁ କିଛି ଧନ ମିଳନ୍ତା ।"

ରାଣୀଙ୍କର ଏ କଥାଗୁଡ଼ାକ ରାଜା ଶୁଣି ନ ଶୁଣିଲପରି ରହିଲେ । ଯେଉଁ ଝିଅକୁ ସେ ଏତେ ଆଦରରେ ବଢ଼ାଇଥିଲେ ତାକୁ ବା ସେ ପରର ଗ୍ରକର କରି କପରି ବିକି ଦିଅନ୍ତେ ? ନୂଆରାଣୀ କିନ୍ତୁ ଛାଡ଼ିବା ମଣିଷ ନୁହେଁ । ସେ ବରାବର କୃତ୍ତିକା ନାଆଁରେ ଖଟମିଛ କହି ତା

ପ୍ରତି ରାଜାଙ୍କ ମନ ଫିଟା କରାଇଦେଲା । ଶେଷରେ ରାଜା ଝପ୍‌ପା ହୋଇ କହିଲେ, "ନାହିଁ, ସେ ଅପଦାର୍ଥ ଝିଅଟାକୁ ଆଉ ନଅରରେ ରଖି ଲଭନାହିଁ । ଆର ପାଳିକୁ ତାକୁ ନେଇ ହାଟରେ ବିକିଦେବା ।"

ନୂଆରାଣୀ ମନେ ମନେ ସନ୍ତୁଷ୍ଟ ହୋଇ କହିଲା, "ହେଉ ମଣିମା, ମୁଁ ଏଥର ତାକୁ ଭଲକରି ଖୋଇପେଇ ମୋଟା କରିଦେଉଛି ଯେ ବିକିଲେ ଭଲ ଦାମ୍ ମିଳିବ ।" ସେହିଦିନଠାରୁ ସେ କୃତ୍ତିକାକୁ ଭଲ ଭଲ ଜିନିଷ ଖାଇବାକୁ ଦେଲା । ଦିନ କେତୋଟା ଭିତରେ କୃତ୍ତିକା ସତେଲସୁନ୍ଦର ହୋଇ ଅଧିକ ଉଜ୍ଜ୍ୱଳତାଉଳ ଦେଖାଗଲା । ସେ ଭାବିଲା ଏଥର ତାର ଭଲଦିନ ଫେରିଆସିଲା । କିନ୍ତୁ ତା ସାବତଭାଇ କୁଆଁ ତାରା ମନରେ ସନ୍ଦେହ ଉପୁଜିଲା । ସେ ଭାବିଲା, ମାଆ ତ ଆଜଯାଏ କୃତ୍ତିକାକୁ ଆଡ଼ଆଖିରେ ବି ଚାହୁଁ ନଥିଲା, ହାତ ଟେକି ଦରପୋଡ଼ା ବାସିରୁଟି ଖଣ୍ଡେ ବି ତାକୁ ଦେଉନାହିଁ, ଏବେ କାହିଁକି ଏତେ ଆଦର ହୋଇ ପଡ଼ୁଛି ? ନିଶ୍ଚୟ ଏ ଭିତରେ କିଛି ଗୋଟାଏ ମତଲବ ଅଛି । ସେ ତା ମାଆର ମନକଥା ଜାଣିବା ଲାଗି ଓର ଉଣ୍ଡିଲା । ଦଇବ ଭୁଆଁରେ ଦିନେ ସବୁ ଗୁମରକଥା ତା କାନରେ ପଡ଼ିଗଲା; ସେ ଶୁଣିଲା ତା ମାଆ ରାଜାଙ୍କ ପାଖରେ ବସି କହୁଛି, "ମଣିମା, ଖାଇ ପିଇ କୃତ୍ତିକା ବେଶ୍ ମୋଟା ହେଲାଣି; କାଲି ହାଟ ପାଳି ପଡ଼ୁଛି, କାଲି ନେଇ ତାକୁ ବିକିଦେବ ।" ରାଜା କହିଲେ, "ହେଉ, ତୁମର ଯାହା ଇଚ୍ଛା ତାହା ହିଁ କରିବା ।"

ଏକଥା କାନରେ ପଡ଼ିବା ମାତ୍ରେ କୁଆଁ ତାରା ଗୁମନିଆଁ ହୋଇଗଲା । ତାର ଆଦରର ସାବତ ଭଉଣୀ ପରଦୁଆରରେ ଦାସୀ ହୋଇ କାଳ କାଟିବ, ଏ କଥା ସେ ମୋଟେ ଭାବି-ପାରିଲାନାହିଁ । ରାକ୍ଷସୀ ମାଆ ହାତରୁ ଭଉଣୀଟିକୁ କିପରି ରକ୍ଷାକରିବ ତାର ଉପାୟ ଖୋଜି ଖୋଜି କୁଆଁ ତାରା ନଅରରୁ ଯାଇ ସେଠାର ଜଣେ ସବଜାଣ ବୁଢ଼ୀଙ୍କ ପାଖରେ ପହଞ୍ଚିଗଲା । ସେ ବୁଢ଼ୀଙ୍କ ବୟସ ଯେ କେତେ ସେ କଥା କେହି ଜାଣନ୍ତି ନାହିଁ । ଚମ ଲୋଳି ପଡ଼ିଗଲାଣି, ଆଖିରେ ପରଳ ମାଡ଼ି ବସିଲାଣି, ତଥାପି ସେ ମଣିଷର ଆଗତ ଭବିଷ୍ୟତ କହନ୍ତି ବୋଲି ତାଙ୍କ ଦୁଆରେ ସକାଳୁ ସଞ୍ଜ ଯାଏ ଲୋକଭିଡ଼ ଜମିଥାଏ । ପାଖ ପାହାଡ଼ର ଗୋଟିଏ ଗୁମ୍ଫାରେ ସେ ରହନ୍ତି । କୁଆଁ ତାରା ତାଙ୍କ ପାଖକୁ ଯାଇ ସବୁ ଜଣାଇବାପରେ କାକୁସ୍ଥ ହୋଇ ପଚାରିଲେ, "ମାଆ, ମୋ ସାବତ ଭଉଣୀ କୃତ୍ତିକା କିପରି ମୋ ମାଆଙ୍କ କବଳରୁ ରକ୍ଷା ପାଇବ ତାର ଉପାୟ ବତାଇଦିଅନ୍ତୁ ।"

ସବଜାଣ ବୁଢ଼ୀ କହିଲେ, "ତୁମ ଭାଇ ଭଉଣୀଙ୍କ ସ୍ନେହ ଚିରଦିନ ଅତୁଟ ହୋଇ ରହିବ, କିନ୍ତୁ ତୋ ମାଆ ହାତରୁ ଭଉଣୀକୁ ରକ୍ଷା କରିବା ଲାଗି ତତେ ବହୁତ କଷ୍ଟ ସହିବାକୁ ପଡ଼ିବ । କଣ କରିବୁ ଶୁଣ । କାଲି ତୋ ଭଉଣୀକୁ ହାଟରେ ବିକିବାକୁ ନେବା ପୂର୍ବରୁ ତୋ ମାଆ ତାକୁ ପାଖକୁ ଡାକି ତାର ମୁଣ୍ଡ କୁଣ୍ଡାଇ ଦେଇ ଖଣ୍ଡିଏ ନାଲି ରିବନ ବାନ୍ଧି ଦେବାକୁ ଡାକିବ । ସେ ମୁଣ୍ଡ କୁଣ୍ଡାଉଥିବା ବେଳେ ତୁ କଣ କରିବୁ ନା ଝପଟି ଯାଇ ତା' ହାତରୁ ପାନିଆ, ରିବନ ଫିତା ଛଡ଼ାଇ ଆଣିବୁ, ସେ ତେଣେ ପାଟି କରୁକରୁ ତୁ ଏଣେ

ଭଉଣୀକୁ ଟାଣିନେଇ ନଅରରୁ ଧାଇଁ ପଳାଇବୁ...... ।"

କୁଆଁ ତାରା ପଚାରିଲା, "ମାଆ କଣ ଆମକୁ ପଳାଇଯିବାକୁ ଦେବ ? ସେ କଣ ପଛରୁ ଦୌଡ଼ିଆସି ଆମକୁ ଧରପକାଇବନାହିଁ ?" ସବଜାଣ ବୁଢ଼ୀ କହିଲେ, "ସେହିକଥା ପରା କହୁଛି । ସେ ଯେତେବେଳେ ତୁମକୁ ଧରିବାଲାଗି ଗୋଡ଼େଇବ, ତୁ ଯେତେବେଳେ ତା ଉପରକୁ ପାନଆଁଟା ଫୋପାଡ଼ି ଦେବୁ । ସେ ପାନଆ ଗୋଟାଉ ଗୋଟାଉ, ତୁମେ ଦହେଁ ଆହୁରି ଥୋଡ଼ାଏ ବାଟ ଧାଇଁ ପଳାଇଥିବ । ସେ ପୁଣି ଗୋଡ଼େଇ ଆସି ତୁମ ପାଖରେ ପହଞ୍ଚିଯିବା ବେଳକୁ ତୁ ଶବନ ଫିତା ମେଞ୍ଚାକ ତା ଉପରକୁ ଫୋପାଡ଼ି ଦେବୁ । ସେ ଶବନ୍ ଫିତା ଗୋଟାଇବାରେ ଲାଗିଥିବ, ତୁମେ ପୁଣି ଥୋଡ଼ାଏ ବାଟ ପଳାଇ ଯିବ ।"

"ତଥାପି ଯଦି ସେ ଆସି ଆମକୁ ଧରପକାଏ ?"

"ସେ ଯଦି ସେଠିକରେ ନ ଅଟକି ପୁଣି ତୁମକୁ ଧରିବା ଲାଗି ଗୋଡ଼େଇ ଆସେ, ତେବେ ହେଇଟି, ଏ ପତର ପୁଡ଼ିଆଟି ଧରିଥା, ତା ଉପରକୁ ଫୋପାଡ଼ି ଦେବୁ । ଦେଖିବୁ ସେ ଆଉ ମୋଟେ ଆଗେଇପାରିବନାହିଁ; ଯେଉଁଠି ଥିବ, ସେଇଠି ଅଟକିଯିବ ।"

କୁଆଁ ତାରା ସବଜାଣ ବୁଢ଼ୀକୁ ଅନେକ ଧନ୍ୟବାଦ ଦେଇ ପତ୍ର ପୁଡ଼ିଆଟି ଧରି ନଅରକୁ ଚାଲିଆସିଲା । ନଅରରେ ଆସି ପହଞ୍ଚୁ ପହଞ୍ଚୁ କୃତ୍ତିକାକୁ ବଗିଚା ଭିତରକୁ ଡାକିନେଇ ବାପା ମାଆ କିପରି ତାକୁ ନେଇ ହାଟରେ ବିକି ଦେବା ଲାଗି ବସିଛନ୍ତି ସେ କଥା କହିଦେଲା । କୃତ୍ତିକା ଝର୍‌ଝର୍ କରି କରି ହୋଇ କାନ୍ଦପକାଇଲା । କହିଲା, "ଭାଇ, ତୁମେ ଯଦି ମୋତେ ରକ୍ଷା ନ କରିବ ତେବେ ମୁଁ କଲବଲ ହୋଇ ମରିଯିବ ।" କୁଆଁ ତାରା ତାକୁ ଆଶ୍ୱାସନା ଦେଇ ସବଜାଣ ବୁଢ଼ୀ କହିଥିବା ଉପାୟ ଗୁଡ଼ିକ ଶୁଣାଇଦେଲା । କହିଲା, "ମୁଁ ଡାକିବା ମାତ୍ରେ ତୁ ଦୌଡ଼ି ପଳାଇ ଆସିବା ଲାଗି ଯେପରି ଗୋଡ଼ ଟେକି ବସିଥିବୁ ।"

ତା ପରଦିନ ସକାଳୁ ସକାଳୁ ସତ ସବଜାଣ ବୁଢ଼ୀ କହିଥିବା ଭଳି କଅଁଳ କଥା କହି ନୂଆରାଣୀ କୃତ୍ତିକାକୁ ପାଖକୁ ଡାକିନେଲା । ତାକୁ କୋଳରେ ବସାଇ ବଡ଼ ଆଦରରେ ତା ମୁଣ୍ଡ କୁଣ୍ଡାଇଦେଉଛି ଏ ସମୟରେ କୁଆଁ ତାରା ଦୌଡ଼ି ଆସି ତା ହାତରୁ ପାନଆ ଓ ଶବନ୍ ଫିତା ଛଡ଼ାଇନେଲା । ରାଣୀ ହାଁ ହାଁ କରୁକରୁ କୁଆଁ ତାରା କୃତ୍ତିକାକୁ ଟାଣିନେଇ ଏପରି ଜୋରରେ ନଅରରୁ ଧାଇଁପଳାଇଗଲା ଯେ କେହି ତା ବାଟ ଓଗାଳି ପାରିଲା ନାହିଁ । ଏ ଘଟଣା ଦେଖି ରାଣୀ ରାଗରେ ସଁ ସଁ ହୋଇ ସେମାନଙ୍କୁ ଗୋଡ଼ାଇଲା । ଭାଇ ଭଉଣୀ ସହର ପାର ହୋଇ ଅନେକ ଦୂର ଚାଲିଗଲେଣି, ଏ ସମୟରେ ରାଣୀ ସେମାନଙ୍କର ଖୁବ୍ ପାଖରେ ଆସି ପହଞ୍ଚିଗଲେ । ବିପଦ ମାଡ଼ିଆସିଲା ଦେଖି କୁଆଁ ତାରା ରାଣୀ ଉପରକୁ ପାନଆଁଟା ଫୋପାଡ଼ିଦେଲା ।

ଆଶ୍ଚର୍ଯ୍ୟ କଥା, ପାନଆଁଟା ତଳେ ପଡ଼ିଯିବା ମାତ୍ରେ ତାର ପ୍ରତିଟି ଦାନ୍ତରୁ ଗୋଟିଏ ଗୋଟିଏ କଣ୍ଟାଗଛ ବାହାରି ସେଠାରେ ଆଖି ପିଛୁଳାକେ ଗୋଟିଏ କଣ୍ଟାବଣ ତିଆରି ହୋଇଗଲା । ରାଣୀ ସେ କଣ୍ଟା ବଣ ଭିତରେ ଏପରି ଛନ୍ଦି ହୋଇଗଲା ଯେ ସେ ଭିତରୁ

ବାହାରିବା ଲାଗି ସେ ସହଜରେ ବାଟ ପାଉନାହିଁ । ଏଣେ ତେଣେ ଦରାଣ୍ଡି ହୋଇ ରାଣୀ ସେ ଭିତରୁ ବାହାରିବା ବେଳକୁ କୃତ୍ତିକା ଓ କୁଆଁ ତାରା ଅନେକ ଦୂର ଦୌଡ଼ି ପଳାଇ ଗଲେଣି । ରାଣୀ ଧଇଁ ସଇଁ ହୋଇ ପୁଣି ସେମାନଙ୍କୁ ଗୋଡ଼ାଇଲା । ଖୁବ୍ ଖୁବ୍ ସେ ପୁଣି ଯାଇ କୃତ୍ତିକାର ଖୁବ୍ ପାଖରେ ପହଞ୍ଚିଗଲା । ଆଉ ବିଳମ୍ବ କରିବା ଉଚିତ ହେବ ନାହିଁ ଭାବି କୁଆଁ ତାରା ତା ମାଆ ଉପରକୁ ଶବନ୍ ଫିତା ବଣ୍ଡାଟା ଫୋପାଡ଼ିଦେଲା । ଆଶ୍ଚର୍ଯ୍ୟ କଥା, ଫିତା ବଣ୍ଡାଟା ରାଣୀ ଆଡ଼କୁ ଗଡ଼ି ଯାଉଛି କି ନାହିଁ ରାଣୀ ଓ ଏ ଭାଇ ଭଉଣୀଙ୍କ ମଧ୍ୟରେ ଗୋଟାଏ ଲମ୍ବା ପଡ଼ିଆ ସୃଷ୍ଟି ହୋଇଗଲା । କୃତ୍ତିକା ଓ କୁଆଁ ତାରା ପଡ଼ିଆର ଏ ମୁଣ୍ଡରେ ପାଇଲା ବେଳକୁ ରାଣୀ ଯାଇ ଆର ମୁଣ୍ଡରେ । ତଥାପି ରାଣୀ ଧଇଁସଇଁ ହୋଇ ଦୌଡ଼ି ଆସିଲା । ଭାଇ ଭଉଣୀ ଯେତେହେଲେ ପିଲା ଦୁଇଟା—କେତେ ବା ଦୌଡ଼ିବେ ? ସେମାନେ କିଛିବାଟ ଯାଇଛନ୍ତି କି ନାହିଁ ରାଣୀ ଆସି ପାଖରେ ପାଇଗଲା । ସେ କୃତ୍ତିକା ଆଡ଼କୁ ହାତ ବଢ଼ାଇଲାଣି ଦେଖି କୁଆଁ ତାରା ଆଉ ବିଳମ୍ବ ନକରି ତାର ଶେଷ ଅସ୍ତ୍ର ସେହି ପଙ୍କ ପୁଡ଼ିଆଟି ରାଣୀଙ୍କ ଆଡ଼କୁ ଫୋପାଡ଼ିଦେଲା । ଓଃ ! କି ଶକ୍ତି ସେ ପୁଡ଼ିଆର ! ତଳେ ପଡ଼ିଛି କି ନାହିଁ, କେଉଁଠି ଏତେ ପାଣିଥିଲା କେଜାଣି, ଅଁଶି ପିଚ୍ଛୁଳାକେ ସବୁ ପାଣି ଆସି ସେଠାରେ ଜମା ହୋଇଗଲା । ପର ମୁହୂର୍ତ୍ତରେ ଦେଖାଗଲା ସେଠାରେ ଗୋଟିଏ ମସ୍ତବଡ଼ ଲୁଣାହ୍ରଦ ତିଆରି ହୋଇଯାଇଛି । ରାଣୀ ସେ ହ୍ରଦ ପାଣିରେ ଉବୁଡ଼ୁବୁ ହୋଇ ଯାଉ ଯାଉ ଗୋଟାଏ ଏପରି ଲହରୀ ଉଠିଲା ଯେ ରାଣୀ ସେଥିରେ ବୁଡ଼ିଗଲା—ଆଉ କି ସେ ସେଥିରୁ ବର୍ତ୍ତିଲା ? ଲୁଣିପାଣି ପିଇ ତା ପ୍ରାଣବାୟୁ ଉଡ଼ିଗଲା । କୃତ୍ତିକା ଓ କୁଆଁ ତାରା ଆଉ ସେ ଆଡ଼କୁ ନ ଅନାଇଁ ଦୂରକୁ ଚାଲିଗଲେ ।

ଦୌଡ଼ି ଦୌଡ଼ି ଦୁଇଜଣଙ୍କୁ ଭୀଷଣ ଶୋଷ ହେଉଥାଏ । କିନ୍ତୁ ଯେତେ ଯେଉଁଆଡ଼େ ଖୋଜିଲେ ଟୋପାଏ ପିଇବା ପାଣି ମିଳିଲା ନାହିଁ । ଖୋଜ ଖୋଜ ଯାଉ ଯାଉ ଦେଖାଗଲା ଗୋଟିଏ ଥାନରେ ଓଦାମାଟି ଉପରେ ଗୋରୁ ଖୋଜ ପଡ଼ି ଯେଉଁ ଛୋଟ ଗାତଟିଏ ହୋଇ ଯାଇଥିଲା ସେଥିରେ ମୁନ୍ଦାଏ ପାଣି ଜମିଛି । ସେଥିରୁ ମୁନ୍ଦାଏ ପାଣି ପିଇ ଦେବା ଲାଗି କୁଆଁ ତାରା ଧାଇଁଲା । କିନ୍ତୁ କୃତ୍ତିକା ତାକୁ ବାରଣ କରି କହିଲା. "ମୋ ରାଣ ଅଛି ଭାଇ, ତୁମେ ସେ ପାଣି ପିଇଲେ ତୁମେ ବି ଗୋରୁ ହୋଇଯିବ ।"

କୁଆଁ ତାରା ବାଧହୋଇ ସେ ପାଣି ନ ପିଇ ପଳାଇଆସିଲା । ଦୁହେଁ ପୁଣି କିଛି ବାଟ ଚାଲିଛନ୍ତି, କୁଆଁ ତାରାର ଶୋଷ ଅତୁଳ ବଢ଼ିଗଲା । ଶୋଷରେ ଆଉଟୁପାଉଟୁ ହୋଇ ସେ ପାଣି ପାଇଁ ଏଣେ ତେଣେ ଚାହୁଁଛି, ଦେଖିଲା ଗୋଟିଏ ସ୍ଥାନରେ ଛେଳି ଖୋଜ ଭିତରେ ମୁନ୍ଦାଏ ପାଣି ଜମିଛି । ସେ ପାଣିତକ ପିଇଦେବା ଲାଗି କୁଆଁ ତାରା ଧାଇଁଲା ଦେଖି କୃତ୍ତିକା ତାକୁ ବାରଣ କରି କହିଉଠିଲା, "ନା, ନା, ଭାଇ, ସେ ପାଣି ମୋଟେ ପିଅନାହିଁ; ପିଇଲେ ତୁମେ ଛେଳି ହୋଇଯିବ ।"

"ଯାହାହେଲେ ହେଉ, ମୋ ପ୍ରାଣଟା ରହିଯାଉ" କହି କୁଆଁ ତାରା ଭଉଣୀର ବାରଣ

ନ ମାନ ଛେଳ ଖୋଜରେ ଜମିଥିବା ପାଣିଟକ ପିଇଦେଲା । ଆଃ, ଆଉ ସେ ଦୁଃଖ ଦେଖେ କଏ !! ବଚର ସେହି ମୁହୂର୍ତ୍ତିରେ ଗୋଟିଏ କଲା ଛେଳଛୁଆ ହୋଇଗଲା ! ଭଉଣୀ ହାୟ ! ହାୟ !! ହୋଇ କାନ୍ଦ ଉଠିବା ବେଳକୁ ଛେଳ ଛୁଆଟି ଆସି ତା ଦେହ ମୁହଁ ଗ୍ଭଟିପକାଇଲା । କୃତ୍ତିକା ଖେ ଖେ ହୋଇ ଅନେକ କାନ୍ଦଲା । କନ୍ତୁ କାନ୍ଦଲେ କଣ ଛେଳ ଅଉ ମଣିଷ ହୋଇ ଯାଅନ୍ତା ! ଉପାୟ ନଦେଖି ସେ ଛେଳଛୁଆଟିକୁ ଧର ଅଗ୍ରୟ ଖଣ୍ଡିଏ ଖୋଜ ବୁଲଲା ।

ଅନେକ ଦନ ଏପର ବୁଲବୁଲ ଦନେ ସେ ଗୋଟିଏ ପାହାଡ଼ ତଳ ଝରଣା ପାଖରେ ପହଞ୍ଚିଲା । ଝରଣାରୁ ନଜେ ମୁନ୍ଦଏ ପାଣି ପିଇଲା, ଛେଳକ ମୁନ୍ଦଏ ପିଆଇଲା । ତାପରେ ଛେଳଟିକୁ ଚରବା ପାଇଁ ଛାଡ଼ିଦେଇ ନଜେ ଝରଣା ପାଖର ଗୋଟିଏ ଗଛ ଡାଳରେ ବସି ଟିକଏ ବଶ୍ରାମକଲା । ଏ ସମୟରେ ଜଣେ ସଇସ ସେହି ଝରଣାରେ ପାଣି ପିଆଇବା ଲାଗି ଦୁଇଟି ଘୋଡ଼ା ନେଇ ଆସି ପହଞ୍ଚିଲା । ସେ ଘୋଡ଼ା ଦୁଇଟି ହେଉଛନ୍ତି ସେ ଦେଶ ରାଜାଙ୍କର । ରାଜା ଯୁବକ ଲୋକ, ବଣକୁ ଶିକାର କରବାକୁ ଆସିଥାନ୍ତି । ହରଣ ପଛରେ ଦୌଡ଼ ଦୌଡ଼ ହାଲିଆ ହୋଇ ସେ ବଶ୍ରାମ କରୁଥିବା ବେଳେ ତାଙ୍କ ସଇସ ଘୋଡ଼ାଙ୍କୁ ପାଣି ପିଆଇବାକୁ ଆଣିଥାଏ, ତେଣେ ଝରଣା ପାଣିରେ କୃତ୍ତିକାର ପ୍ରତବମ୍ବ ପଡ ଝଲମଲ କରୁଥାଏ । ଘୋଡ଼ା ଦୁଇଟା ପାଣି ଭିତରେ ସେ ପ୍ରତବମ୍ବ ଦେଖି ମୋଟେ ପାଣି ପିଇଲେ ନାହିଁ । ଘୋଡ଼ା କାହିଁକ ପାଣି ପିଉନାହାନ୍ତି ବୋଲ ସଇସ ଚାହିଁଦଏତ ଦେଖିଲା ଝରଣା ପାଣି ଭିତରେ ଜଳରାଇକର ପରୀଟି ଚାହିଁଛି । କୃତ୍ତିକାର ପ୍ରତବମ୍ବଟିକୁ ସେ ଗୋଟିଏ ପରୀ ବୋଲ ଭାବନେଲା ! ସେ ଡାଟକା ହୋଇ କଛି ସମୟ ଚାହିଁ ରହବା ପରେ ତରତର ହୋଇ ରାଜାଙ୍କ ପାଖକୁ ଦୌଡ଼ଯାଇ କହଲା, "ମଣିମା ବଡ଼ ଆଚମ୍ବିତ କଥା ଦେଖିଲି । ମତେ ସତ, ମଣିମାଙ୍କୁ ମିଛ, ସେ ଝରଣା ଭିତରେ ଗୋଟିଏ ଜଳପରୀ ଆମ ଘୋଡ଼ା ଦୁଇଟାକୁ ଚାହିଁରହଛି ।" ରାଜା ପ୍ରଥମେ ଏ କଥା ବଶ୍ୱାସକଲେନାହିଁ । କନ୍ତୁ ସଇସ ଯେତେବେଳେ ରାଣ ନୟମ ପକାଇ ବାରମ୍ବାର ସେହି କଥା କହଲା, ରାଜା ସେତେବେଳେ ଝରଣା ପାଖକୁ ଆସିଲେ । ଝରଣାକୁ ଚାହିଁ ଚାହିଁ ସେ ଜାଣିଗଲେ ଯେ କୌଣସି ପରୀ ଚାହିଁ ନାହିଁ, ନଶ୍ଚୟ କାହାର ପ୍ରତବମ୍ବ ପଡ଼ିଛି । ତେଣୁ ସେ ଉପରକୁ ଚାହିଁଲେ । ଦେଖିଲେ ଗଛ ଡାଳରେ ଅତ ସୁନ୍ଦରୀ ଝିଅଟିଏ ବସିଛି । କୃତ୍ତିକାର ଆଖି ସହତ ତାଙ୍କ ଆଖି ମିଳିଗଲା । ତା ରୂପରେ ସେ ଏପର ମୋହ ହୋଇଗଲେ ଯେ କହଲେ, "ଆଗୋ ସୁନ୍ଦରୀ, ଏଠାରେ ଏ ଗଛ ଡାଳରେ ବସିଛ କାହିଁକ ? ଆସ ଆମ ନଅରକୁ ଯାଇ ସୁଖରେ ରହବ ।"

ରାଜାଙ୍କ କଥା ଶୁଣି କୃତ୍ତିକା ଗଛରୁ ତଳକୁ ଓହ୍ଲାଇ ଆସିଲା । ରାଜା ତାକୁ ତା ଘର କେଉଁଠି, ବାପା ମାଆ କଏ, ସେଠାକୁ କପର ଆସିଲା ଇତ୍ୟାଦ ଇତ୍ୟାଦ କଥା ପଗ୍ଭରଲେ । ସେ ଯେତେବେଳେ ଶୁଣିଲେ ଯେ କୃତ୍ତିକା ଜଣେ ରାଜକୁମାରୀ, ସେ ମନେମନେ ଠିକ୍ କର ନେଲେ ଯେ ଏହି ଝିଅଟିକୁ ହିଁ ବବାହ କରବେ । ସେ ରାଜନଅରକୁ ଯିବାକୁ ଡାକୁଛନ୍ତି

ଦେଖି କୃତ୍ତିକା କହିଲା, "ମଣିମା ଯଦି ମୋର ଗୋଟିଏ କଥା ରଖିବେ, ତାହେଲେ ମୁଁ ନଅରକୁ ଯିବ ।" ରଜା କହିଲେ—"କଣ କହ ।"

"ମୋର ଏ ଛେଳିଟି ମୋ ସାଙ୍ଗରେ ଯିବ । ବରାବର ମୋ ସାଙ୍ଗରେ ରହି ନଅର ବଗିଚାର ଯେତେ ମିଠା ଘାସ ସବୁ ଖାଇବ ।"

ରାଜା କହିଲେ, "ଏହି କଥା ତ ! ଏଥିରେ ଆପତ୍ତି କରିବାର କଣ ଅଛି ? ଛେଳି ଯିବ, ଯାହା ଇଚ୍ଛା ତା ଖାଇବ । ଏଥର ରାଜି ତ ?"

କୃତ୍ତିକା ଅଉ ଅଟକି ହେବାର କାରଣ କିଛି ନ ଥିଲା । ସେ ଛେଳିଟି ଧରି ରାଜାଙ୍କ ସହିତ ତାଙ୍କ ନଅରକୁ ଚାଲିଆସିଲା । ରାଜା ମନ୍ତ୍ରୀମାନଙ୍କୁ ଡକାଇ ନିଜ ମନକଥା କହିବା ସଙ୍ଗେ ସଙ୍ଗେ ମହାଆଡ଼ମ୍ବରରେ କୃତ୍ତିକା ସହିତ ତାଙ୍କର ବିବାହକାର୍ଯ୍ୟ ସରିଗଲା । ରାଜ୍ୟର ରାଣୀ ହୋଇ କୃତ୍ତିକା ଦାସୀ ପୋଇଲିଙ୍କ ମହଲରେ ପରମ ସୁଖରେ ରହିଲା—ହେଲେ ତା ଆଦରର ଛେଳିଟିକୁ ହତାଦର କଲାନାହିଁ । ଛେଳିଟି ନଅର ବଗିଚାରେ ବୁଲି ଯେତେକ ମିଠା ଘାସ ସବୁ ଖାଏ, ରାତିରେ କୃତ୍ତିକା ରହିବାଘର ପାଖରେ ଶୁଏ । ଏପରି ଆରାମରେ କୃତ୍ତିକାର ଦିନ କଟିଗଲା ସତ, ହେଲେ ସେ ନଅରରେ ପାଦ ଦେବା ଦିନୁ ରାଜାଙ୍କ ମାଆ ବୁଢ଼ୀରାଣୀ ତାକୁ ଦୁଇ ଆଖିରେ ଦେଖିପାରିଲେନାହିଁ । ସେ ମନେ ମନେ କହୁଥିଲେ—ଏ କେଉଁଠିକାର ପତରଖାଇ ଛତରାଟାଏ, ଜାତିରେ ଗୋଲଣୀ କି ଗଉଡ଼ୁଣୀ ହେବ ଯେ ଛେଳିଟାଏ ଧରି ଆସିଛି । ଏ ମୋ ଘରେ ବୋହୂ ହେବାକୁ ଯୋଗ୍ୟ ନୁହେଁ । ଏହାକୁ କୌଣସି ନା କୌଣସି ଉପାୟରେ ମାରିଦେଲେ ମୋଘରୁ କଣ୍ଟାଯିବ । କୃତ୍ତିକା ସୁନ୍ଦର ଲୁଗା ଖଣ୍ଡିଏ କି ସୁନ୍ଦର ଅଲଙ୍କାରଟିଏ ପିନ୍ଧିଥିବା ଦେଖିଦେଲେ ବୁଢ଼ୀ ରାଣୀଙ୍କ ଦେହରେ ନିଆଁ ଲାଗିଯାଉଥାଏ । ଏପରି କିଛି ଦିନ ଯିବାପରେ ନିଜ ମନସ୍କାମନା ପୂର୍ଣ୍ଣକରିବା ଲାଗି ବୁଢ଼ୀ ରାଣୀଙ୍କୁ ଦିନେ ସୁଯୋଗ ମିଳିଗଲା ।

ସେଦିନ ରାଜା ଶିକାର କରିବାକୁ ଯାଇଥାନ୍ତି । ଶାଶୁ ବୋହୂ ଦୁହେଁ ବଗିଚା ବୁଲି ବାହାରିଲେ । ସାଙ୍ଗରେ ଛେଳି ବି ଚାଲିଲା । ଅନ୍ୟ କେହି ଦାସୀ କି ପୋଇଲି ପାଖରେ ନଥାନ୍ତି । ଏ ଫୁଲ ସେ ଫୁଲ ଦେଖି ଦେଖି ଯାଉ ଯାଉ ଦୁହେଁ ଆସି ପଦ୍ମପୋଖରୀ ପାଖରେ ପହଞ୍ଚିଲେ । କୂଳରେ ଗୋଟିଏ ବଡ଼ ପଦ୍ମଫୁଲ ଫୁଟିଥାଏ । କୃତ୍ତିକା ସେଇଟିକୁ ଧରିବା ଲାଗି ହାତ ବଢ଼ାଇଛି ଏ ସମୟରେ ବୁଢ଼ୀ ରାଣୀ ତାକୁ ପଛରୁ ଠେଲିଦେଲେ । ବିଚାରୀ କୂଳରୁ ଗଡ଼ିଯାଇ ଟୁବୁକିନା ପାଣିରେ ବୁଡ଼ିଗଲା । ଛେଳିଟା ମେଁ ମେଁ ହୋଇ ରଡ଼ିଛାଡ଼ୁଥାଏ —ବୁଢ଼ୀ ରାଣୀ କିଛି ନ ଜାଣିବା ପରି ସେଠାରୁ ପଳାଇ ଆସିଲେ । କୃତ୍ତିକା ପାଣିରେ ବୁଡ଼ି ପଦ୍ମଲତା ଭିତରେ ଛନ୍ଦି ହୋଇ ରହିଗଲା । ଉପରବେଳାକୁ ରାଜା ଶିକାରରୁ ଫେରି କଣ ଗୋଟାଏ କାମରେ ରାଣୀଙ୍କୁ ଖୋଜିଲେ—କିନ୍ତୁ ରାଣୀ କୁଆଡ଼େ ଗଲେ କେହି କହି ପାରିଲେ ନାହିଁ । 'କୃତ୍ତିକା' କୃତ୍ତିକା' ଡାକି ରାଜା ନଅରର ଏମୁଣ୍ଡରୁ ସେମୁଣ୍ଡ ଯାଏ ଖୋଜିଗଲେ । କିନ୍ତୁ କୃତ୍ତିକା ତ ପୋଖରୀରେ ବୁଡ଼ିଯାଇଛି-

ଡାକ ଶୁଣିବ କିଏ ? ବୋହୂ କେଉଁଆଡ଼େ ଗ୍ଭଲିଗଲା କହି ବୁଢ଼ୀରାଣୀ ଅନେକ ବ୍ୟସ୍ତ ହେବାର ବାହାନା କଲେ । ନଅର ତମାମ ହୁଲସ୍ଥୁଲ ପଡ଼ିଗଲା । ଲୋକଙ୍କ ଏ ଚାଉଳାଉଳରୁ ବଗିଗ୍ଭ ଭିତରେ ଛେଳିଟା ଡେଣେ ମେଁ ମେଁ ହୋଇ ରଡ଼ିଛାଡ଼ୁଥାଏ ।

ଛେଳି ରଡ଼ିରେ ବିରକ୍ତ ହୋଇ ବୁଢ଼ୀରାଣୀ କହିଲେ-ବୋହୂ ତ ମଲା କି ହଜିଲା ଯେ ତାର ପତ୍ତା ନାହିଁ, ଆଉ ଏ ପୋଡ଼ା ଛେଳିଟା କିଆଁ ନଅର କମ୍ପେଇଉଛି—ଦିଅ ହାଣି ଦିଅ ଯେ ଓଳିକ ତରକାରୀ ଚଳିଯିବ । ରାଜା ପ୍ରଥମେ ଏଥିରେ ରାଜିହେଉନଥିଲେ, କିନ୍ତୁ ଛେଳିଟି ଯେତେବେଳେ ବେଶି ମେଁ ମେଁ ହେଲା, ରାଜା ବିରକ୍ତ ହୋଇ ମାଆଙ୍କ କଥାରେ ରାଜିହୋଇଗଲେ । ଛେଳି ହଣାହୋଇ ମାଂସ ତରକାରି ବସିଲା । ରାଜା ସେ ଦୃଶ୍ୟ ଦେଖି ନପାରି ମନଦୁଃଖରେ ବଗିଚ୍ଚରେ ବୁଲୁବୁଲୁ, ଦେଖିଲେ ପୋଖରୀ କୂଳରେ ଗୋଟିଏ ପଦ୍ମଫୁଲ ଧରି କାହାର ଗୋଟିଏ ଗୋରା ତକତକ ହାତ ପାଣି ଉପରକୁ ଉଠିଛି । ରାଜା ଯାଇ ପାଖକୁ ଯାଇ ହାତଟି ଧରି ଟାଣିବାରୁ ଦେଖିଲେ ସେ ହାତ କୃତ୍ତିକାର । ସେ ଆତୁର ହୋଇ କୃତ୍ତିକାକୁ ପାଣି ଭିତରୁ ଟେକିଆଣିଲେ । ସେତେ-ବେଳକୁ ସେ ପାଣି ପିଇ ଅଚେତ ହୋଇଯାଇଥାଏ । ସଙ୍ଗେ ସଙ୍ଗେ ରାଜବୈଦ୍ୟଙ୍କୁ ଡକାଗଲା । ନାନା ଔଷଧ ମହୋଷଧ ଦେଇ ବୈଦ୍ୟ କୃତ୍ତିକାର ଚେତା ଫେରାଇଆଣିଲେ । ବୁଢ଼ୀରାଣୀ ଦୌଡ଼ିଆସି ନାମିସ୍ତା ଲୋକଙ୍କ ପରି ଲୁହ ବୁହାଇ କୃତ୍ତିକାକୁ ଆଉଁସି ଅଣ୍ଡାଳ ପକାଇଲେ । ତାଙ୍କର ସେ କୁମ୍ଭୀର କାନ୍ଦଣାର ଅର୍ଥ କୃତ୍ତିକା ଛଡ଼ା ଆଉ କେହି ବୁଝି ପାରିଲେ ନାହିଁ । ଯାହାହେଉ ରାଣୀ ମୃତ୍ୟୁ ମୁଖରୁ ଉଦ୍ଧାର ପାଇଥିବାରୁ ରାଜା ଏକ ବଡ଼ ଭୋଜିର ଆୟୋଜନ କଲେ । ଭୋଜିରେ ଛେଳି ମାଂସ ତରକାରି ପରଷା ଗଲା । ସମସ୍ତେ ଖୁସିରେ ଖାଇଲେ; କିନ୍ତୁ କୃତ୍ତିକା ସେ ତରକାରିରେ ହାତ ମାରିଲା ନାହିଁ । ଖିଆପିଆ ଶେଷ ହେବା ପରେ କେତେ ମାଂସ ଖାଇ ଯେଉଁ ହାଡ଼ତକ ଛାଡ଼ି ଯାଇଥିଲେ କୃତ୍ତିକା ସେହିତକ ଗୋଟେଇ ନେଇ ବଗିଗ୍ଭର ଗୋଟିଏ ଭଲ ସ୍ଥାନରେ ପୋତିଦେଲା ।

ତା ପରଦିନ ସକାଳୁ କଣ ହେଲା ଜାଣିଛ ? ତା ପରଦିନ ସକାଳେ ଦେଖାଗଲା ଯେଉଁ ସ୍ଥାନରେ କୃତ୍ତିକା ଛେଳି ହାଡ଼ ପୋତି ଦେଇଥିଲା, ସେଠାରେ ଗୋଟିଏ ସୁନ୍ଦର କମଳାଗଛ ଠିଆହୋଇଛି । ଗଛଟି ଖାସା ଉଚ୍ଚ ହୋଇଯାଇଥାଏ । ପୁଣି ତାର ଗୋଟିଏ ଡାଳରେ ଗୋଟିଏ ନାଲି ଟହ ଟହ ପାଚିଲା କମଳା ଝୁଲୁଥାଏ । ନୂଆ କମଳାଗଛ ଦେଖିବାଲାଗି ନଅରର ସମସ୍ତେ ଧାଇଁ ଆସିଲେ । ପାଚିଲା କମଳାଟି ଦେଖି ବୁଢ଼ୀ ରାଣୀଙ୍କ ପାଟିରୁ ଲାଳ ବୋହିଲା । ସେ କହିଲେ, "ତୁମେ ସବୁ ଗଛ ଦେଖୁଥାଅ । ମୁଁ ଯାଏ କମଳାଟି ତୋଳି ଖାଏ ।" ଏହା କହି ସେ କମଳା ତୋଳିବାକୁ ହାତ ବଢ଼ାଇଲେ । କିନ୍ତୁ ସେ ହାତ ବଢ଼ାଇବାକ୍ଷଣି କମଳା ଫଳିଥିବା ଡାଳଟି ଉପରକୁ ଉଠିଗଲା—ଯେତେ ଚେଷ୍ଟାକଲେ ବି ବୁଢ଼ୀଙ୍କ ହାତ ପାଇଲା ନାହିଁ । ମାଆ କମଳା

ଖାଇବାକୁ ମନ କରୁଛନ୍ତି ଦେଖି ନଜେ ରାଜା ଆସି କମଳା ତୋଳିବାକୁ ହାତ ବଢ଼ାଇଲେ । କିନ୍ତୁ ସେ ଡାଳ ପୁଣି ଟିକିଏ ଉପରକୁ ଉଠିଗଲା ଯେ ରାଜାଙ୍କ ହାତ ମଧ୍ୟ ପାଇଲା ନାହିଁ । ରାଜା କମଳା ତୋଳିବାକୁ ଚେଷ୍ଟାକରି ଥକିଗଲେ ଦେଖି ନଅରର ପାଟମନ୍ତ୍ରୀଙ୍କଠାରୁ ଆରମ୍ଭ କରି ଦାସଦାସୀ ପର୍ଯ୍ୟନ୍ତ ସମସ୍ତେ ଆସି କମଳା ତୋଳିବାକୁ ହାତ ବଢ଼ାଇଲେ । ଆଶ୍ଚର୍ଯ୍ୟ କଥା ସେ କମଳା ଡାଳକୁ କାହାରି ହାତ ପାଇଲା ନାହିଁ । ସମସ୍ତେ ଯେତେବେଳେ କମଳା ତୋଳିବାରେ ବିଫଳ ହୋଇଗଲେ, ସେତେବେଳେ ରାଜା କୃତ୍ତିକାକୁ କହିଲେ, "କାହିଁ ରାଣୀ, ତୁମେ ଟିକିଏ ଚେଷ୍ଟା କର ।"

କୃତ୍ତିକା ଯାଇ କମଳାଗଛକୁ ହାତ ବଢ଼ାଇଲାକ୍ଷଣି ଡାଳଟି ତଳକୁ ନଇଁ ଆସିଲା । କିନ୍ତୁ ସେ କମଳାଟିକୁ ଧରିବାମାତ୍ରେ ତା ଭିତରୁ କେହି ଜଣେ ଚୁପ୍ ଚୁପ୍ କରି କହିଉଠିଲା, "ମୋ ସୁନା ଭଉଣୀ, ମୋତେ ଜୋର୍‌ରେ ଧରିଥା । ମୁଁ ତତେ ନେଇ ଚାଲିଯିବି ।"

କୃତ୍ତିକା ବୁଝିଗଲା ତା ଭାଇ କୁଆଁ ତାରା ହିଁ ଏପରି କହୁଛି । ତେଣୁ ସେ କମଳାର ଡମ୍ଫଟିକୁ ଗୋଟିଏ ହାତରେ ଖୁବ୍ ଜୋର୍‌ରେ ଧରିପକାଇଲା । ଗୁହୁଁ ଗୁହୁଁ ଡାଳଟି ପୁଣି ଉପରକୁ ଉଠିବାକୁ ଲାଗିଲା । ଏ କଣ ହେଲା ବୋଲି ସମସ୍ତେ ଆଶ୍ଚର୍ଯ୍ୟ ହୋଇ ଚାହିଁଛନ୍ତି, ଡାଳ କୃତ୍ତିକାକୁ ନେଇ ଆକାଶରେ ଖୁବ୍ ଉଚ୍ଚକୁ ଉଠିଗଲା । କୃତ୍ତିକା ଉପରୁ ହାତ ହଲାଇ ବିଦାୟ ବାଣୀ ଶୁଣାଇଲା— "ବିଦାୟ ସ୍ୱାମୀ । ମୁଁ ଅଭାଗିନୀ— ମୋ କପାଳରେ ଏ ସଂସାରର ସୁଖନାହିଁ । ପିଲାଟି ଦିନରୁ ମାଆକୁ ହରାଇଲି । ସାବତ ମାଆ ହୋଇ ଯେ ଆସିଲେ ସେ ମୋ ଶିରି ଦେଖି ପାରିଲେ ନାହିଁ । ଭାଇଙ୍କ ଦୟାରୁ ମୁଁ ପ୍ରାଣ ଧରି ପଳାଇ ଆସିଲି ସତ, ହେଲେ ଦଇବ ମୋ ଭାଇକୁ ଛେଳି କରିଦେଲା । ଶେଷରେ ଆପଣଙ୍କ ସ୍ନେହ ପାଇ ଭାବିଥିଲି ଏଥର ଶାନ୍ତିରେ ଦିନ କାଟିବି । କିନ୍ତୁ ମୋ ଶାଶୁଙ୍କ ଦାଉ ସ ବତମାଆଙ୍କ ଦାଉକୁ ବଳିଗଲା । ସେ ମୋତେ ପୋଖରୀକୁ ଠେଲିଦେଇ ମୋ ଭାଇ ଛେଳିଟିକୁ କାଟି ତରକାରି କରିଦେଲେ । ଅଉ ଏ ସଂସାରରେ ମୋର ସ୍ଥାନ ନାହିଁ, ବିଦାୟ ।"

ସମସ୍ତେ ତାଟକା ହୋଇ ଚାହିଁଛନ୍ତି, ଭାଇ ଭଉଣୀ ଦହେଁ କୋଳାକୋଳି ହୋଇ ଆକାଶକୁ ଉଠିଗଲେ । ସେହି ଦିନଠୁଁ ସେମାନେ କୃତ୍ତିକା ଓ କୁଆଁ ତାରା ହୋଇ ଆକାଶରେ ଝିଟକୁଛନ୍ତି ।

---

# ଚତୁରୀ କନ୍ୟା

ଜଣେ ରାଜା ଥାଆନ୍ତି ଯେ ସେ ଖୁବ ଚତୁର । ତାଙ୍କର ଗୋଟିଏ ପୁଅ ହେଲା ଯେ ସେ ତା ବାପାଙ୍କଠାରୁ ବଳି ଚତୁର । ପିଲାଟି ଦିନୁ ସେ କଥା କହିଲେ ଗୀତ ବାନ୍ଧି ଢଗଢମାଳିକାରେ କଥା କହନ୍ତି । ସେ ପ୍ରାୟ ସାଧାସିଧା କଥା କହନ୍ତି ନାହିଁ—ସେପରି ଅକଲବାଲା ନହେଲେ କେହି ତାଙ୍କ କଥାର ମର୍ମ ବୁଝିପାରନ୍ତିନାହିଁ । ତାଙ୍କର ବିବାହ ବୟସ ହୋଇଯିବାରୁ ରାଜା କନ୍ୟା ଖୋଜାଇଲେ । ବହୁତ ଆଡ଼ୁ ବହୁତ ପ୍ରସ୍ତାବ ଆସିଲା; କିନ୍ତୁ ସେ ଯୁବରାଜଙ୍କ ମନକୁ କୌଣସି ପ୍ରସ୍ତାବ ପାଇଲାନାହିଁ । ସେ କହିଲେ, ମୋର ଯେ ସ୍ତ୍ରୀ ହେବ ସେ ମୋରି ପରି ଚତୁର ହୋଇଥିବା ଦରକାର । ବୋକାଟେ ବାହାହୋଇ ଲାଭକଣ —ଅଯଥା ମୋ ବଂଶ ବୋକା ହୋଇଯିବ । ଏପରି ଚତୁରୀ କନ୍ୟା ଖୋଜି ଖୋଜି ବର୍ଷ ବର୍ଷ ବିତିଗଲା-ବାହାଘର ହୋଇପାରିଲାନାହିଁ ।

କିଛି କାଳ ପରେ ଦିନେ ଯୁବରାଜ ତାଙ୍କ ସାଙ୍ଗ ସାଥୀଙ୍କ ସହିତ ବସି ଗପ କରୁଛନ୍ତି, ଏ ସମୟରେ ଜଣେ କାଠୁରିଆ ବୁଢ଼ା ବୋଝେ କାଠଧରି ନଅରକୁ ଆସିଲା । ରନ୍ଧାଶାଳ ପାଖରେ କାଠ ଥୋଇଦେଇ ଫେରିବା ବେଳକୁ ସେ ଶୁଣିଲା ଯୁବରାଜ ତାଙ୍କ ସାଙ୍ଗମାନଙ୍କୁ ଦୁଃଖରେ କହୁଛନ୍ତି, "ହଁ, ମତେ ଆଉ ଚତୁରୀ କନ୍ୟା ମିଳିବ ନାଁ ମୁଁ ବିବାହ କରିବି "

ଏକଥା ଶୁଣି କାଠୁରିଆ ବୁଢ଼ା ସେଠାରେ ଥକ୍କା ହୋଇ ଠିଆହୋଇଗଲା । ଭାବିଲା, ତା'ହେଲେ ଚତୁରୀ କନ୍ୟା ମିଳୁନାହାନ୍ତି ବୋଲି ଯୁବରାଜ ବାହା ହେଉନାହାନ୍ତି ! ମୋ ଝିଅଟି ସୁନ୍ଦରୀ ଯେପରି ଚତୁରୀ ସେପରି; ଯୁବରାଜ ଯଦି ମୋ ଝିଅଟିକୁ ବାହା ହୁଅନ୍ତେ ତେବେ ମୋ ଭାଗ୍ୟ ଖୋଲିଯାଆନ୍ତା; ଏ ଗରିବିଆ ଜୀବନରୁ ଛୁଟିମିଳିଯାଆନ୍ତା । ଏହା ଭାବି ସେ ଯୁବରାଜଙ୍କ ପାଖକୁ ଯାଇ କହିଲା, "ମଣିମା, ମୁଣ୍ଡ ରହିଲେ ତୁଣ୍ଡ କହିବ ।"

ଯୁବରାଜ କହିଲେ,— ଭଲ ଅସାରକୁ ବାରେଣ ନାହିଁ ;
ସତ କହିବାକୁ ଡରିବ କାହିଁ ?"

କାଠୁରିଆ ବୁଢ଼ା ଯୁବରାଜଙ୍କ ଗୀତର ଅର୍ଥ ବୁଝି କହିଲା, "ମଣିମା, ମୋର ଗୋଟିଏ ଝିଅ ଅଛି । ସେ ଏକା ମଣିମାଙ୍କ ଲାଗି କନ୍ୟା ରୂପ ଯେପରି, ଗୁଣ ସେପରି ।"

ଯୁବରାଜ ସାମାନ୍ୟ ଗୋଟାଏ କାଠୁରିଆଠାରୁ ଏପରି ପ୍ରସ୍ତାବ ଆଶା କରିନଥିଲେ । ସେ କିଛି ସମୟ ଚୁପ୍ ରହିଗଲେ । ଭାବିଲେ —"ମୁଁ ରାଜାର ପୁଅ; ରାଜକନ୍ୟାଟିଏ ମିଳିଲାନାହିଁ ଯେ ଶେଷକୁ କାଠୁରିଆ ଘରେ ବିବାହ କରିବି ? କିନ୍ତୁ କିଛି ସମୟ ପରେ ସେ ମନକୁ ବୁଝାଇଲେ, "ଯାହା ଘର ଝିଅ ହେଲେ କଣ ହେଲା—ଯାହାର ବୁଦ୍ଧି ଅଛି ତାର ସବୁ ଅଛି । କାଠୁରିଆ ଝିଅଟି ଯଦି ସତରେ ବୁଦ୍ଧିମତୀ ହୋଇଥିବ, ତାକୁ ବିବାହ କଲେ କ୍ଷତି ନାହିଁ ।" ଏହା ଭାବି ସେ କାଠୁରିଆକୁ କହିଲେ—

"ତୁମ ଝିଅ ଯଦ ଚତୁର ବାହା ହେବାକୁ ମୁଁ ଆତୁର ।
ଅନ୍ୟଥା ହୋଇଲେ ଅନ୍ୟଥା ହୋଇବ ସତଚନ୍ଦ୍ର ଦଅ ଉତ୍ତର ।"

କାଠୁରିଆ ବୁଢ଼ା ବୁଝିଗଲା ଯେ ତା କଥା ଯଦ ମିଛ ହୁଏ, ତେବେ ତାକୁ କଷ୍ଟସ୍ୱ ଦଣ୍ଡ ମିଳବ । କିନ୍ତୁ ତା ଝିଅକୁ ସେ ଭଲକର ଜାଣେ । ତେଣୁ କହିଲା, "ମଣିମା, ପରୀକ୍ଷା କଲେ ଜାଣିପାରିବେ—ମୁଁ ଆଉ ଅଧିକ କଣ କହିବ !"

ଯୁବରାଜ ବୁଢ଼ାର ନାଆଁ ଗାଆଁ ଟିପି ରଖିଲେ । କହିଲେ, "ଠିକ୍ ଅଛି, ମୁଁ ପରୀକ୍ଷା କରି ଦେଖିବ; ତୁମେ ଘରକୁ ଯାଇ ଝିଅକୁ ଖବର ଦେଇଦଅ ।" ବୁଢ଼ା ମନଆନନ୍ଦରେ ଘରକୁ ଫେରି ଝିଅକୁ ସବୁକଥା କହିବାରୁ ଝିଅ କହିଲା, "ତୁମେ ଚିନ୍ତା କରନା ବାପା, ମୁଁ ଯୁବରାଜଙ୍କ ସବୁ ପରୀକ୍ଷାର ମୁକାବିଲା କରିବ ।"

ଏ ଘଟଣାର ଦିନକ ପରେ ଯୁବରାଜ ତାଙ୍କ ନିଗ୍ରୋ ଚାକରକୁ ଡାକି ତା' ହାତରେ ବାରପଟ ରୁଟି, ମୁଣ୍ଡାଏ ଛେନା ଓ ଚମଡ଼ା ଥଳରେ ଦୁଇ ଥଳ ସରବତ ଦେଇ କହିଲେ, "ଆରେ, ତୁ ସେ କାଠୁରିଆ ଘରକୁ ଏତକ ଜିନିଷ ନେଇ ଦେବୁ । ଆଉ ଏ ଚିଠି ଖଣ୍ଡିକ ନେଇ ତା ଝିଅକୁ ଦେବୁ—କହିବୁ ମଣିମା ଏ ଚିଠିର ଉତ୍ତର ମାଗିଛନ୍ତି ।"

କଳା ନିଗ୍ରୋ ଚାକରଟି ଜିନିଷତକ ନେଇ କାଠୁରିଆ ଘରକୁ ଚାଲିଲା । ସେ ଲୋକଟିର ଟିକିଏ ବାଟମାରଣା ବୁଦ୍ଧି ଥାଏ । ବାଟରେ ସେ ଦୁଇଖଣ୍ଡ ରୁଟି ଓ କିଛି ଛେନା ଖାଇଦେଇ ଚାଳେଟିଏ ସରବତ ପିଇଦେଲା । ବାକି ଜିନିଷତକ ନେଇ କାଠୁରିଆ ଝିଅ ହାତରେ ଧରାଇଦେଲା ଏବଂ ଚିଠିଟି ଦେଇ କହିଲା, "ମଣିମା କହିଛନ୍ତି ଚିଠି ପଢ଼ି କଣ ଉତ୍ତର ଲେଖିବ ଶୀଘ୍ର ଲେଖି ଦଅ । ମୁଁ ନେଇ ସ୍ୱାମୀରେ ପଢ଼ାଠ କରିବ ।"

ଯୁବରାଜ କ ଚିଠ ଲେଖିଛନ୍ତି, କ କ ଜିନିଷ ପଠାଇଛନ୍ତି ଦେଖିବାଲାଗି କାଠୁରିଆ ବୁଢ଼ା ଧାଇଁଆସିଲା । ରୁଟି, ଛେନା ଓ ସରବତ ଦେଖି ସେ ଖୁବ୍ ଖୁସିହୋଇଗଲା । ତାପରେ ଝିଅ ହାତରୁ ଚିଠିଟି ନେଇ ପଢ଼ିଲା । ଚିଠିରେ ଲେଖାଥିଲା—

"ଚନ୍ଦ୍ର ଅଟଇ ସୁଗୋଲ ସୁନ୍ଦର ବରଷକେ ବାରମାସ,
କାଳିଆ ବୋଦାର ଦୁଇ ପେଟ ଭରି ଆଉ କ ଖାଇବ ଘାସ ?"

ବୁଢ଼ା ସେ ଚିଠିର ଅର୍ଥ କିଛି ବୁଝି ନପାରି ଝିଅ ମୁହଁକୁ ବଲବଲକରି ଚାହିଁଲା । ତା ଝିଅ କିନ୍ତୁ ଚିଠିଟି ପଢ଼ି ମନେ ମନେ ହସିଦେଇ ନିଗ୍ରୋ ଚାକର ଆଣିଥିବା ଜିନିଷତକ ପରଖି ବସିଲା । ଜିନିଷପତ୍ର ଦେଖିସାରି ସେ ଯୁବରାଜଙ୍କ ପାଖକୁ ଉତ୍ତର ଲେଖି ପଠାଇଦେଲା—

"ଚନ୍ଦ୍ର ହୋଇଛି ଖଣ୍ଡିଆ ମଣିମା, ବରଷକ ଦଶମାସ
ଏକ ଅତୁରରେ ବୋଦା ଖାଇଗଲା ଅଧା ବାରଯାଏ ଘାସ ।
କିନ୍ତୁ ପରର ଦୋଷକୁ ଧରିବନି,
ଧଳା ପାରିଟିକୁ ଧରିବା ଆଶାରେ କଳା ଭୁଆଟିକୁ ମାରିବନି ।"

ସେ ଚାକରଟି ଉତ୍ତର ନେଇ ଯୁବରାଜଙ୍କ ପାଖକୁ ଚାଲିଯିବାପରେ ବୁଢ଼ା ତା ଝିଅକୁ

ପଗ୍ଭରିଲ, "ମାଆଲୋ, ଯୁବରାଜ କ ଚଠି ଲେଖିଥିଲେ, ତୁ କ ଉତ୍ତର ଦେଲୁ, ମୁଁ କିଛ ବୁଝି ପାରିଲିନାହିଁ । ସେ ଯଦ ତୋ ଉତ୍ତର ପଢ଼ି ଖପ୍‌ପା ହୋଇଯାଅନ୍ତି, ତେବେ ମୋ ମୁଣ୍ଡ ଗଣ୍ଡି ଦୁଇଖଣ୍ଡ ହୋଇଯିବ ଜାଣିଥା ।"

କାଠୁରିଆ ଝିଅ ତା ବାପାଙ୍କୁ ବୁଝାଇ କହିଲା, ବାପା, ତୁମେ ସିନା ବୁଝି ପାରିଲନାହିଁ, ହେଲେ ମୁଁ ଠିକ୍ ବୁଝି ଠିକ୍ ଉତ୍ତର ଦେଇଛି । କଥା କଣ କି ଯୁବରାଜ ଆମ ପାଖକୁ ବାର ପଟ ରୁଟି ପଠାଇଥିବାରୁ ଲେଖିଥିଲେ 'ବରଷ ବାରମାସ', ପୁଣି ଖଣ୍ଡିଏ ଗୋଲ ଛେନା ପଠାଇଥିବାରୁ ଲେଖିଥିଲେ 'ଚନ୍ଦ୍ର ଅଟଇ ସୁଗୋଲ ସୁନ୍ଦର' ଏବଂ ଛେଲି ଚମଡ଼ା ଥଳିରେ ଦୁଇ ଥଳି ସରବତ୍ ପଠାଇଥିବାରୁ ଲେଖିଥିଲେ 'କାଳିଆ ବୋଦାର ଦୁଇ ପେଟ ଭରି' କାରଣ ସେ ଯେଉଁ ନିଗ୍ରୋ ଚାକରଟା ଏସବୁ ଜିନିଷ ଆଣିଥିଲା ତା ଦେହଟା ଚିପଣ୍ଡ କଳା— କାଳିଆ ବୋଦା ପରି କଳା । 'ବୋଦା ଆଉ ଘାସ ଖାଇବ କି'ର ଅର୍ଥ ହେଲା ସେ ଚାକରଟା କିଛି ବାଟ ମାରଣା କରିବନାହିଁ । କିନ୍ତୁ ତୁମେ ତ ଦେଖିଲ ସେ ଆମ ପାଖକୁ ମୋଟେ ଦଶପଟ ରୁଟି ଆଣି ଦେଇଥିଲା । ଛେନାରୁ ବି ଖଣ୍ଡେ ଖାଇ ଯାଇଥିଲା ସେ ଛେନା ମୁଣ୍ଡାଟି ଖଣ୍ଡିଆ ହୋଇଯାଇଥିଲା । ପୁଣି ଦୁଇ ଥଳିରୁ ଦୁଇ ଢୋକ ଖଣ୍ଡେ ସରବତ୍ ବି ପିଇଦେଇଥିଲା ଯେ ସେ ଦୁଇଟା ପ୍ରାୟ ଅଧା ହୋଇଯାଇଥିଲା । ସେ ଲୋକଟା ନିଶ୍ଚୟ ଭୋକ ଆତୁରରେ ଏପରି ଖାଇଯାଇଛି । ତେଣୁ ମୁଁ ଲେଖିଦେଲି—

'ଚନ୍ଦ୍ର ହୋଇଛି ଖଣ୍ଡିଆ ମଣିମା, ବରଷକ ଦଶମାସ
ଭୋକ ଆତୁରରେ ବୋଦା ଖାଇଗଲା ଅଧା ବାଡ଼ଯାଏ ଘାସ ।'

କିନ୍ତୁ ଯେତେହେଲେ ଚାକର ବିଚରା । କେବେ ଭଲ ମନ୍ଦ ଟିକିଏ ଖାଇବାକୁ ପାଏନି ବୋଲି ସିନା ଏପରି କଲା, ତାକୁ ଗୁଡ଼ାଏ ଦୋଷ ଦେଇ ଲାଭ କଣ ? ତେଣୁ ମୁଁ ଚଠିରେ ଲେଖିଦେଲି, ଧଳା ପାରାଟିକୁ ଧରିବାଲାଗି,' ଅର୍ଥାତ୍ ମୋ ପରି ସୁନ୍ଦରୀ ଚତୁରୀ କନ୍ୟାଟିଏ ପାଇବା ଲାଗି ସେ 'କଳାଭୁଆଟିକୁ' ଅର୍ଥାତ୍ କଳା ନିଗ୍ରୋ ଚାକରଟିକୁ ମାରନ୍ତୁ ନାହିଁ ।— ଏଥର ବୁଝିପାରିଲ ?"

କାଠୁରିଆ ବୁଢ଼ା ଝିଅର ବୁଦ୍ଧି ଦେଖି ଧନ୍ୟ ଧନ୍ୟ କହିବାକୁ ଲାଗିଲା ! ତେଣେ ଯୁବରାଜ ବି ସେ ଉତ୍ତର ପଢ଼ି ଭାରି ଖୁସିହୋଇଗଲେ । କେବଳ ପରୀକ୍ଷା କରିବା ଲାଗି ସେ ଚାକରଟିକୁ ଡାକି ଧମକାଇ ପଚାରିଲେ, "ହଇରେ ମୂର୍ଖ, ତୁ କେତେ ପଟ ରୁଟି ଖାଇଗଲୁ— ଦୁଇ ନା ତିନି ?"

ନିଗ୍ରୋ ଚାକରଟି କହିଲା, "ମଣିମା, ଭୋକ ହେବାରୁ ମୋଟେ ଦୁଇଟା ରୁଟି ଖାଇଦେଇଛି, ତିନିଟା ନୁହେଁ ।" ଯୁବରାଜ ହସି ହସି ପଚାରିଲେ, "ଛେନା ଟିକେ ବି ଖାଇଦେଲୁ ?" ସେ ଡରିମରି କହିଲା, "ହଁ ମଣିମା, ଲୋଭ ସମ୍ଭାଳି ନପାରି ଖଣ୍ଡେ ଛେନା ବି ଖାଇଦେଲି । ଢୋକେ ଖଣ୍ଡେ ସରବତ୍ ବି ପିଇଦେଲି । କ୍ଷମା କରନ୍ତୁ ।"

ଯୁବରାଜ ତାଙ୍କ ମନଲାଖି ଚତୁର୍ଥ କନ୍ୟା ପାଇଥିବାରୁ ଖୁସି ହୋଇଗଲେ । ସେ ଆଉ କଣେ ଟିକିଏ ଦଣ୍ଡ ନଦେଇ କ୍ଷମାଦେଲେ । ତା ପରଦିନ ମହା ସମାରୋହରେ ଯୁବରାଜଙ୍କ ସହିତ କାଠୁରିଆ ଝିଅର ବିବାହ ଉତ୍ସବ କରାଗଲା । ଅନେକ ଭୋଜିଭାତ କଲେ । ମୁଁ ଯିବାରୁ ମତେ ପେଟେ ଖୁଆଇ ଦେଲେ ଯେ ପେଟ ଖାଲିହୋଇଗଲା ।

---

## ବାଣୁଆପୁଅ ଓ ପାତ୍ରମିତ

ଗୋଟିଏ ବଣରେ ବିଧବା ବୁଢ଼ୀଟିଏ ଥାଏ ଯେ ତାର ଗୋଟିଏ ବୋଲି ପୁଅ । ସେହି 'ଏକୋଇର ବନା ବଣିକେଶନ'ଟିକୁ ତା ମାଆ ଖତରେ ବଡ଼ ଆଦର ଯତ୍ନରେ ବଢ଼ାଇଥିଲା । ବଡ଼ହେବାରୁ ସେ ଖୁବ୍ ଲମ୍ବା ଚଉଡ଼ା ମଣିଷଟାଏ ହେଲା । ତାର ସେ ଲୁହାପରି ଟାଣ ଦେହ ଓ କବାଟ ପଟାପରି ଛାତି ଦେଖି ସେ ଦେଶ ରାଜା ତାକୁ ନିଜ ବାଣୁଆ ଦଳରେ ଚାକିରିଟିଏ ଦେଲେ । ତାର ବାପା ମଧ୍ୟ ସେ ଅଞ୍ଚଳର ଜଣେ ଜଣାଶୁଣା ବାଣୁଆଥିଲେ । ସେ ବି ଜଣେ ବାଣୁଆ ହୋଇଗଲା । ରାଜା ତାକୁ ଆଦରରେ ଡାକଲେ, "ବାଣୁଆପୁଅ" । ସେହିଦିନଠାରୁ ଅନ୍ୟମାନେ ବି ତାକୁ 'ବାଣୁଆପୁଅ' ବୋଲି ଡାକଲେ । ରାଜା ବାଣୁଆ-ମାନଙ୍କୁ ସଙ୍ଗରେ ନେଇ ଶିକାର କରିବା ଲାଗି ବଣକୁ ଯାଆନ୍ତି; କିନ୍ତୁ କେହି ଏ ବାଣୁଆ ପୁଅ ପରି ଶିକାର କରିପାରନ୍ତି ନାହିଁ । ତା ଶର କେବେ ବ୍ୟର୍ଥ ହୁଏନି, ବରଂ ସେ ଥରେ ଥରେ ଗୋଟାଏ ଶରରେ ଦୁଇଦୁଇଟା ଚଢ଼େଇ ଖସାଇଦିଏ । ଯେଉଁ ଦିନ ରାଜା ଶିକାର କରିବାକୁ ଯାଆନ୍ତିନାହିଁ, ସେଦିନ ବାଣୁଆପୁଅ ଏକାଟିଆ ଯାଇ ବଣରୁ ଜନ୍ତୁ ମାରିଆଣେ । ଜନ୍ତୁ ହେଉ କି ଚଢ଼େଇ ହେଉ ଯାହା କିଛି ମରି ହୋଇ ଆସେ ସବୁ ରାଜାଙ୍କ ରୋଷେଇକୁ ଯାଏ । ଫଳରେ ବାଣୁଆପୁଅ ଚାକିରିରେ ରହିବା ଦିନୁ ରାଜାଙ୍କ ମଣୋହି ପାଇଁ ମାଂସ ନ ମିଳିଛି ଏପରି ଦିନଟିଏ ଯାଇନାହିଁ ।

ଦିନେ ରାଜା ଶିକାର କରିବାକୁ ଯାଇନଥାନ୍ତି । ବାଣୁଆପୁଅ ଏକା ଯାଇ ବଣରୁ ଫେରିବାବେଳକୁ ମାଳେ ହରଡ଼ ଚଢ଼େଇ ମାରି ଆଣିଥାଏ । ସେ ଦେଶର ମହାମନ୍ତ୍ରୀ ହୋଇ ଯେଉଁ ଲୋକ ଥିଲେ ସେ ଭାରି ସ୍ୱାର୍ଥପର ଲୋକ । ନିଜ ସ୍ୱାର୍ଥ ପାଇଁ ଆଉ ପାଞ୍ଚଜଣଙ୍କର କ୍ଷତି କରିବାକୁ ସେ ପଛାନ୍ତି ନାହିଁ । ବାଣୁଆପୁଅ ଫେରିବା ବେଳକୁ ବାଟରେ ତାର ମହାମନ୍ତ୍ରୀଙ୍କ ସହିତ ଭେଟ ହୋଇଗଲା । ହରଡ଼ ଚଢ଼େଇ ମାଳକ ଦେଖିଦେଇ ତାଙ୍କ ପାଟି ଲାଳେଇଲା । ସେ ତାକୁ ଖୁବ୍ ଗୁଡ଼ାଏ ମିଠାକଥା କହି ତାରିଫ୍ କରିବା ପରେ କହିଲେ, "ଜୀବନରେ ତୋ ପରି ବାଣୁଆ ଏ ଆଖି ଦେଖିନଥିଲା । ଯଦି ଏ ହରଡ଼ମାଳକ ମତେ ଦେଇ ଦିଅନ୍ତୁ, ମୁଁ ତତେ ଯୋଡ଼ାଏ ସୁନାମୋହର ଦିଅନ୍ତି ।"

ବାଣୁଆପୁଅ ବାଟ ସାରା ପଳାଇ ଯାଉ ଯାଉ କହିଲା, "ଆଜ୍ଞା, ଗ୍ରାମୁଙ୍କୁ ଦଣ୍ଡବତ । ଘୋଡ଼ାଏ କାହିଁକି ମୂଷାଏ ମୋହର ଦେଲେ ବି ହେବନାହିଁ । ଚଢ଼େଇ ପରି ମହାରାଜଙ୍କ ପାଇଁ ମାରୁଛ, ଆପଣଙ୍କୁ ଦେବି କପରି ?"

ମହାମନ୍ତ୍ରୀ ମୁହେଁ ମୁହେଁ ଏପରି ଅପମାନ ପାଇବେ ବୋଲି ଭାବି ନ ଥିଲେ; ସେ ଖାଲି ରକ୍ତଗୁଡ଼ାକ ଗ୍ରେବାଇଦେଲେ । କିନ୍ତୁ କଥାରେ ଅଛି—ସ୍ତ୍ରୀର ମାଆ କବାଟ କଲି ଜାଣେ । ମହାମନ୍ତ୍ରୀ ଅବା କେଉଁ ମୁହଁରେ ରାଜାଙ୍କୁ ଏକଥା କହନ୍ତେ ? ତେଣୁ କଣ କଲେ ବାଣୁଆ-ପୁଅକୁ ଦଣ୍ଡ ଦେଇପାରିବେ, ସେ ଖାଲି ସେହିକଥା ଭାବିହେଲେ ଓ ଓଉ ଉଣ୍ଡି ରହିଲେ । ଏ ସମୟରେ କଣ ହେଲା ନା, ବାଣୁଆପୁଅ ଦିନେ ଗୋଟିଏ ଅଣ୍ଡିରା ହରିଣ ମାରି ଆଣିଲା । ମସ୍ତବଡ଼ ହରିଣ ହୋଇଥାଏ । ଦେଖଣାହାରିମାନେ ଅସି ରାଜାଙ୍କ ଦୁଆରେ ରୁଣ୍ଡହୋଇଗଲେ । ବାଣୁଆପୁଅ ହରିଣଟି ନେଇ ରାଜାଙ୍କ ପାଦତଳେ ଥୋଇ ଦେଇ କହିଲା, "ମହାରାଜ, ଏପରି ହରିଣ ମାଂସ ହିଁ ମଣିମାଙ୍କୁ ଯୋଗାଏ ।"

ରଜା ଖୁସି ହୋଇ ତାକୁ ଅନେକ ଉପହାର ଦେଲେ । ନଅରରେ ଗୋଟାଏ ବଡ଼ ଭୋଜିର ଆୟୋଜନ କରାଗଲା । ମନ୍ତ୍ରୀ ରାଜାଙ୍କ ପଛରେ ଠିଆ ହୋଇ ଏ ସବୁ ଦେଖୁ-ଥାଆନ୍ତି । ବେଳ କାଳ ଉଣ୍ଡି ସେ ରାଜାଙ୍କ କାନରେ କହିଦେଲେ, "ମଣିମାଙ୍କ ଭାଗ୍ୟ ଖୋଲିଛି, ନହେଲେ କି ଏଡ଼େ ବଡ଼ ହରିଣ ନଅର ଦୁଆରକୁ ଆସନ୍ତା ! ଏଠିକିବେଳେ ଯଦି ପଲେ ହାତୀ ମରାଇ ପାରନ୍ତେ ନା, ତେବେ ହାତୀ ଦାନ୍ତରେ ଗୋଟାଏ ନଅର ତୋଳି ପକାନ୍ତେ ।"

ରାଜାଙ୍କୁ ଲୋଭ ଛୁଇଁଲା । ସେ ପଚାରିଲେ, "ହାତୀ ଦାନ୍ତରେ ନଅର ତୋଳିବା ? ···ସତରେ ବଡ଼ ସୁନ୍ଦର ହୁଅନ୍ତା । କିନ୍ତୁ ଆମ ଦେଶରେ କଣ ଏତେ ହାତୀ ମିଳିବେ ?"

ମନ୍ତ୍ରୀ କହିଲେ, "କାହିଁକି ନ ମିଳିବେ ମଣିମା ? ଆମ ବଣରେ ଅନେକ ହାତୀ ଅଛନ୍ତି, ପୁଣି ଆମ ପଡ଼ୋଶୀ ରାଜ୍ୟରୁ ବି ଗୁରୁ ପଲ ହାତୀ ଆମ ରାଜ୍ୟକୁ ପଶି ଆସିଛନ୍ତି ଯେ ସେଗୁଡ଼ାକ ଲୋକଙ୍କ ଫସଲ ନଷ୍ଟ କରୁଛନ୍ତି ବୋଲି ବରାବର ଶୁଣିବାକୁ ମିଳୁଛି । —ହାତୀ ଅଛନ୍ତି—ମରାଇ ପାରିଲେ ହେଲା । କାହିଁକି ବା ମାରି ନ ହେବ ? ଯେଉଁ ଲୋକ ମଣିମାଙ୍କ ପାଇଁ ଏତେ ବଡ଼ ହରିଣ ମାରିଆଣି ଦେଇପାରିଲା, ତାକୁ ହୁକୁମ ଦେଲେ ସେ ନିଶ୍ଚୟ ପଲେ ହାତୀ ମାରିଆଣି ଦେବ । ମହାରାଜା ଟିକିଏ ଧମକ ଦେଇ କହିଲେ ହେବ ।"

ମନ୍ତ୍ରୀଙ୍କ ପ୍ରସ୍ତାବଟା ମହାରାଜାଙ୍କ ମନକୁ ବେଶ୍ ପାଇଲା । ସେ ସଙ୍ଗେ ସଙ୍ଗେ ବାଣୁଆ ପୁଅକୁ ଡକାଇ ହାତୀଦାନ୍ତ ନଅର ତୋଳାଇବା ନିଶାରେ ଆଦେଶ କରିଦେଲେ, "ଆରେ, ଆମ ବଣରେ ପଲେ ହାତୀ ମାଡିଛନ୍ତି । ତୁ ଯାଇ ସେ ପଲକ ହାତୀ ମାରିଦେବୁ । ଦେଶର ଫସଲ ରକ୍ଷାହେବ ; ଆମକୁ ଗୁଡ଼ାଏ ହାତୀଦାନ୍ତ ବି ମିଳିବ ।"

ଏତେ ବଡ଼ ଆଦେଶ ଶୁଣି ବାଣୁଆପୁଅ ଶଙ୍କିଗଲା । କହିଲା, "ମଣିମା, ···ମୋ ଦେଇ ଏ କାମ ହୋଇ ପାରିବ ନାହିଁ । ମୁଁ ଏକା ହାତୀ ପଲେ ମାରିବି କପରି ?" କିନ୍ତୁ ରାଜା

ତାର କୌଣସି ଓଜର ଆପତ୍ତି ନ ଶୁଣି ଗର୍ଜନ କରି ଉଠିଲେ, "ନା, ନା, ମୁଁ କୌଣସି କଥା ଶୁଣିବାକୁ ଚାହେଁନା । ତୁ ଯେଉଁ ସାହାଯ୍ୟ ମାଗିବୁ ତଆସିବ ; କିନ୍ତୁ ତତେ ସେ ପଲକ ହାତୀ ମାରିବାକୁ ପଡ଼ିବ । ମୋର ସେ ହାତୀ ଦାନ୍ତଗୁଡ଼ାକ ଦରକାର । ମୋ କଥା ଅମାନ୍ୟ କଲେ ତୋ ମୁଣ୍ଡ କାଟହେବ ଜାଣିରଖ ।"

ବାଣୁଆପୁଅ ବିଚରା ମନେ ମନେ ପ୍ରମାଦ ଗଣି ଜାନମୁଣ୍ଡ ଆଉଁସି ନଅରରୁ ପଳାଇ ଆସିଲା । ତାର ବିରସ ବଦନ ଦେଖି ତା ମାଆ ତାକୁ ପଚାରିଲା, "କିରେ ବାପ, କଥା କଣ ? ମୁହଁ କାହିଁକି ଶୁଖିଯାଇଛି ?"

ପୁଅ କହିଲା, "ମାଆ, ମହାରାଜା ହୁକୁମ ଦେଇଛନ୍ତି, ମତେ ଗୋଟାଏ ନୁହେଁ କି ଦୁଇଟା ନୁହେଁ, ପଲେ ହାତୀ ମାରି ଆଣିବାକୁ ପଡ଼ିବ । ମୁଁ ସିନା ଉଡ଼ିଯାଉଥିବା ଚଢ଼େଇ, ନହେଲେ ଧାଇଁଯାଉଥିବା ହରିଣକୁ ଶିକାର କରିବା ଶିଖିଛି, ହାତୀ ଶିକାର କେଉଁଠି କେତେବେଳେ ଶିଖିଲି ? ମୁଁ ହାତୀ ମାରି ପାରିବି ନାହିଁ,—ମହାରାଜା ମୋର ମୁଣ୍ଡକାଟ କରିବେ ।"

ପୁଅ କଥା ଶୁଣି ମାଆ ବଡ଼ ଦୁଃଖ କଲା । ତଥାପି ତା ମନରେ ସାହସ ଦେଇ ତା ବାପା କହୁଥିବା ଗୋଟିଏ କଥା କହିଲା । ତା ବାପା କାଳେ ସବୁବେଳେ କହନ୍ତି, "ମତେ ଯଦି ସିମିତ ପଦାର୍ଥ ମିଳନ୍ତା, ତେବେ ମୁଁ ଏକା ରାତକେ ପଲେ ହାତୀ ମାରି ଦଅନ୍ତି ।" ମାଆ କଥା ଶୁଣି ପୁଅ ପଚାରିଲା, "ସିମିତ ପଦାର୍ଥମାନେ କିମିତ ପଦାର୍ଥ ?"

ମାଆ କହିଲା, "ସେ କହନ୍ତି, ତାଙ୍କୁ ଯଦି ଚାରିହେ ହାଣ୍ଡି ଭଲ ନାଲି ମଦ ମିଳନ୍ତା, ତେବେ ବଣ ମଝିରେ ଯେଉଁ ପୋଖରୀଟା ଅଛି ସେ ସେହି ମଦତକ ନେଇ ସେହି ପୋଖରୀରେ ଢାଳିଦଅନ୍ତେ । ହାତୀମାନେ ତ ସେ ପାଖ ଝରଣାକୁ ପାଣି ପିଇବା ଲାଗି ଆସନ୍ତି । ମଦ ବାସନା ପାଇଲେ ସେଗୁଡ଼ାକ ମଦ ପିଇବା ଲାଗି ଏ ପୋଖରୀକୁ ଚାଲିଆସନ୍ତେ । ହାତୀସବୁ ଯେତେବେଳେ ମଦପିଇ ନିଶାରେ ଶୋଇପଡ଼ନ୍ତେ, ସେତେବେଳେ ସେଗୁଡ଼ାକୁ ମାରି ପକାନ୍ତେ । କିନ୍ତୁ ଏତେ ମଦ ମିଳିପାରିଲା ନାହିଁ, କି ସେ ହାତୀ ମାରିପାରିଲେନାହିଁ ।

ମାଆ କଥା ଶୁଣି ପୁଅ ମନରେ ସାହସ ଫେରିଆସିଲା । ଭାବିଲା, ଜଗତରେ ବୁଦ୍ଧି ଯାହାର ବଳ ତାହାର । ତେଣୁ ସେ ସଙ୍ଗେ ସଙ୍ଗେ ରାଜାଙ୍କ ଦରବାରକୁ ଯାଇ ଜଣାଇଲା, "ମଣିମା, ମୁଁ ହାତୀ ଶିକାର କରିବାକୁ ବାହାରୁଛି । ହେଲେ ଏ କାମ ଲାଗି ମୋର ଚାରିଶହ ହାଣ୍ଡି ଭଲ ନାଲିମଦ ଦରକାର ହେବ ; ଖାଣ୍ଟି ନାଲିମଦ ନହେଲେ ଏ କାମ ହୋଇପାରିବନାହିଁ ।"

ରାଜା ତ ହାତୀଦାନ୍ତ ନଅର ତୋଳାଇବା ନିଶାରେ ଥାଆନ୍ତି, ସେ ସଙ୍ଗେ ସଙ୍ଗେ କହି-ଦେଲେ, "ହଁ ତତେ ନିଶ୍ଚୟ ଦେବା । ଚାରିଶହ କାହିଁକି, ଆଠଶହ ହାଣ୍ଡି ନାଲିମଦ ଦେଉଛି ନେଇଯା—କିନ୍ତୁ ହାତୀ ମାରି ଆଣିବାକୁ ପଡ଼ିବ ।"

ରାଜାଙ୍କ ଆଦେଶରେ ସେ ଦେଶର ଯେତେ ଯେଉଁଠି ମଦଭାଟି ବାଲା ଥିଲେ, ସମସ୍ତେ

ଗାଣ୍ଡି ନାଲିମଦ ତିଆରି କରିବାରେ ଲାଗିଗଲେ । ଅଳ୍ପ କେତେଟା ଦିନ ଭିତରେ ବାଣୁଆପୁଅ ଆଠଶହ ହାଣ୍ଡି ଖାଣ୍ଡି ନାଲିମଦ ନେଇ ବଣର ସେ ପୋଖରୀ ପାଖରେ ପହଞ୍ଚିଗଲା । ସେ ଗୋଟାଏ ବିରାଟ ପୋଖରୀ ହୋଇଥାଏ । ତା ତଳଟା ପଥର ଚଟାଣ । ପାଖ ଝରଣାରୁ ପାଣି ଆସି ସେ ଖାଲୁଆ ପଥର ଚଟାଣରେ ଜମିଥାଏ । ବାଣୁଆପୁଅ ସେ ପୋଖରୀରୁ ଗୁଡ଼ାଏ ପାଣି ବୋହିଦେଇ ବାକି ପାଣିରେ ଏ ଆଠଶହ ହାଣ୍ଡି ମଦ ଢାଳି ଦେଲା । ପୋଖରୀଟା ମଦରେ ଭରି ହୋଇଗଲା । ତେଣେ ଅନ୍ଧାର ମାଡ଼ିଆସିବାରୁ ମଦ ବୋହିଆଳମାନେ ଯେ ଯାହା ଘରକୁ ପଳାଇଗଲେ । ବାଣୁଆପୁଅ ଧନୁଶର ଓ ହାତହତିଆର ଧରି ଗୋଟାଏ ଉଚ୍ଚ ଗଛରେ ଚଢ଼ିଗଲା । ମଦ ବାସନାରେ ସେ ଖଣ୍ଡମଣ୍ଡଳ ଚହଟିଯାଉଥାଏ । ବାଣୁଆପୁଅ ହାତୀଙ୍କ ଆସିବା ବାଟକୁ ଗୃଧି ବସିଛି, ଅଧରାତି ବେଳକୁ ଗୋଟାଏ ବଡ଼ ପଲ ହାତୀ ଆସି ସେ ପୋଖରୀ କୂଳରେ ପହଞ୍ଚିଗଲେ । ମଦ ଗନ୍ଧ ପାଇ ସେମାନେ ସମସ୍ତେ ପୋଖରୀରେ ପଶିଲେ । ଯେ ଯେତେ ପାରିଲା ମଦ ପିଇଲା, ଯେ ଯେତେ ପାରିଲା ଖେଳିଲା । ମତୁଆଲା ହୋଇ ଖେଳୁ ଖେଳୁ ମଦ ନିଶାରେ ଘାରିହୋଇ ସବୁଗୁଡ଼ିକ ହାତୀ ଗୋଟି ଗୋଟି ହୋଇ ଶୋଇପଡ଼ିଲେ । ବାଣୁଆପୁଅ ସବୁ ହାତୀଙ୍କୁ ମାରି ରାତି ପାହି ସକାଳ ହେବା ପୂର୍ବରୁ ରାଜାଙ୍କ ନଅରରେ ଯାଇ ପହଞ୍ଚିଗଲା । ତାକୁ ଦେଖି ରାଜା ପଚାରିଲେ, "କିରେ ଖବର କଣ ?" ବାଣୁଆପୁଅ କହିଲା, "ମଣିମା, ମୁଁ ଏକା ରାତିକେ ପଲେ ହାତୀ ମାରିଦେଇ ଆସିଛି । ଏଥର ମାଟିଆମାନଙ୍କୁ ପଠାଇଲେ ସେମାନେ ଗାତ ଖୋଳି ହାତୀଙ୍କି ପୋତିଦେବେ । ମାଂସଗୁଡ଼ାକ ପୋଚିଗଲେ ଦାନ୍ତ ହାଡ଼ସବୁ କାଢ଼ି ଆଣିବା ।"

ପଲେ ହାତୀ ମରିଛନ୍ତି ଶୁଣି ରାଜା ଆନନ୍ଦରେ ନାଚଉଠିଲେ । ସଙ୍ଗେ ସଙ୍ଗେ ଲୋକ ପଠାଇ ହାତୀଗୁଡ଼ାକୁ ପୋତିଦେଲେ । ମାସ ଦୁଇଟା ଭିତରେ ନଅରକୁ ଶଗଡ଼ ଶଗଡ଼ ହାତୀଦାନ୍ତ ଓ ହାତୀହାଡ଼ ବୁହା ହୋଇ ଆସିଲା । ଏ ଘଟଣା ଦେଖି ମନ୍ତ୍ରୀଙ୍କ ମୁହଁ ଶୁଖିଗଲା । ଯାହାହେଉ ଦେଶ ବିଦେଶରୁ ବହୁ କାରିଗର ଡାକି ରାଜା ହାତୀଦାନ୍ତରେ ଗୋଟିଏ ସୁନ୍ଦର ନଅର ତୋଳାଇଦେଲେ । ନୂଆ ନଅର ତୋଳା ସରିବା ଦିନ ରାଜା ଓ ମନ୍ତ୍ରୀ ସେ ଭିତରେ ପଶି ହାତୀଦାନ୍ତର କାନ୍ଥ ବାଡ଼, ଦୁଆର କବାଟ ଉପରେ ମଲ୍ଲିଫୁଲ ପରି ଧଳା ହୋଇଛି ଦେଖୁଛନ୍ତି—ଏ ସମୟରେ ମନ୍ତ୍ରୀଙ୍କ ମୁଣ୍ଡକୁ ଆଉ ଗୋଟାଏ ବୁଦ୍ଧି ଜୁଟିଲା । ସେ ରାଜାଙ୍କୁ କହିଲେ, "ମଣିମା, ଏତେ ସୁନ୍ଦର ନଅର ସିନା ହେଲା, ହେଲେ ଏ ଶୂନ୍ୟ ମନ୍ଦିରରେ କି ସୁଖ ମିଳିବ ? କଥାରେ ଅଛି ଘରକୁ ସୁନ୍ଦର ଘରଣୀ; ମହାରାଜା ଯଦି ଉତ୍ତମ ସୁନ୍ଦରୀ କନ୍ୟାଟିଏ ବିବାହ କରନ୍ତେ, ଦେଖନ୍ତେ ଏ ନଅରର ଶୋଭା କିପରି ବଢ଼ନ୍ତା ।"

ଉତ୍ତମ ସୁନ୍ଦରୀ କନ୍ୟା କଥା ଶୁଣି ରାଜାଙ୍କର ଲୋଭ ବଢ଼ିଲା । ସେ ମନ୍ତ୍ରୀଙ୍କୁ କହିଲେ, "ଉତ୍ତମ ସୁନ୍ଦରୀ କନ୍ୟା କେଉଁଠୁ ମିଳିବ ଯେ ମୁଁ ବିବାହ କରି ସୁଖୀ ହେବି ?" ମନ୍ତ୍ରୀ କହିଲେ, "ଆମ ରାଜ୍ୟ ସୀମାରେ ଯେଉଁ ଉଚ୍ଚ ପର୍ବତଟା ଦେଖୁଛନ୍ତି, ସେ ପର୍ବତରେ ସପ୍ତ ଖାର ବୋଲି ସାତ ଭାଇ ଘର କରି ରହନ୍ତି । ସେମାନେ ସକଳ ବିଦ୍ୟାରେ ପାରଙ୍ଗମ । ସେହି

ସପ୍ତଷୀରଙ୍କର ଗୋଟିଏ ସୁନାନାକୀ ଭଉଣୀ ଅଛି ଯେ ସେ ହେଉଛି ଗୋଟିଏ ଉତ୍ତମ ସୁନ୍ଦରୀ କନ୍ୟା । ରାଜା କହିଲେ, "କିନ୍ତୁ ଆମେ କିପରି ତାକୁ ପାଇବା ?" ଆପଣ ସେଠାକୁ ଯାଇ ଆମ ପକ୍ଷରୁ ବିବାହ ପ୍ରସ୍ତାବ ଦିଅନ୍ତୁ ।

ମନ୍ତ୍ରୀ କହିଲେ, "ନା, ମଣିମା, ସେମାନେ ହେଲେ ବୀର । ବୀର ପାଖକୁ ବୀର ଗଲେ ଶୋଭାପାଇବ । ମଣିମାଙ୍କର ସେଉଁ ବୀର ବାଣୁଆପୁଅ ଏକା ସାଢ଼ଙ୍କେ ପଲେ ହାତୀ ମାରଦେଇ ପାରିଲା, ସେ ଯାଇ ସେ ଉତ୍ତମ ସୁନ୍ଦରୀ କନ୍ୟାକୁ ନେଇଆସିପାରିବ । ମଣିମା ତାକୁ ଆଦେଶ ଦିଅନ୍ତୁ, ସେ ଯାଉ । ତାପରେ କଣ ହେଉଛି ନହେଉଛି ଆମେ ଦେଖିବା ।"

ମନ୍ତ୍ରୀଙ୍କ ପ୍ରସ୍ତାବଟା ରାଜାଙ୍କ ମନକୁ ବେଶ୍ ପାଇଲା । ସେ ସଙ୍ଗେ ସଙ୍ଗେ ବାଣୁଆ ପୁଅକୁ ଡକାଇ କହିଲେ, "ଆରେ, ତତେ ଆଉ ଗୋଟାଏ ଭଲ କାମ ଦିଆଯାଉଛି । ଆମ ରାଜ୍ୟ ସୀମାରେ ସେ ଯେଉଁ ଉଚ୍ଚ ପର୍ବତଟା ଅଛି ତୁ ସେ ପର୍ବତକୁ ଯାଇ ସେଠାରେ ରହୁଥିବା ସପ୍ତଷୀରଙ୍କ ଘରୁ ସେମାନଙ୍କର ଭଉଣୀକୁ ଆଣି ଆମ ନଅରରେ ଛାଡ଼ିଦେବୁ । ସେ ଗୋଟିଏ ଉତ୍ତମ ସୁନ୍ଦରୀ କନ୍ୟା; ସେ ଆମର ରାଣୀ ହେଲେ ଏ ହାଟଦୋଳ ନଅର ଶୋଭା ପାଇବ ।

ଏକଥା ଶୁଣି ବାଣୁଆପୁଅ ଚମକିଗଲା । କହିଲା, "ମଣିମା, ମୁଁ ଗୁରୁ ଦେଇ କଣ ଏତେବଡ଼ କାମ ହୋଇପାରିବ !" ରାଜା ରାଗରେ ଗର୍ଜନ କରି ଉଠିଲେ, "ହିଁ ହିଁ; ନିଶ୍ଚୟ ହୋଇ-ପାରିବ । ଯଦି ସେ କନ୍ୟାକୁ ନ ନେଇ ଫେରିଆସିବୁ, ତେବେ ଜାଣି ରଖ ନିଶ୍ଚୟ ଫାଶି କାଠରେ ଝୁଲାଇଦେବି ।"

ବାଣୁଆପୁଅ ମନଦୁଃଖରେ ଘରକୁ ଫେରି ଆସିଲା । ତା ଶୁଖିଲା ମୁହଁ ଦେଖି ତା ମାଆ ପଚାରିଲା, "କିରେ ବାପ, ମୁହଁ କାହିଁକି ଶୁଖାଇଦେଇଛୁ ? ମହାରାଜା ପୁଣି କଣ କହିଲେ କି ?" ପୁଅ କହିଲା, "ମୋତେ ମହାରାଜା ଆଦେଶ କରିଛନ୍ତି ଯେ ମୁଁ ସେ ଉଚ୍ଚ ପର୍ବତକୁ ଯାଇ ସେଠାରେ ଥିବା ସପ୍ତଷୀରଙ୍କ ଭଉଣୀକୁ ଧରିଆଣିଲେ ମହାରାଜା ତାକୁ ରାଣୀ କରିବେ । କିନ୍ତୁ ମୁଁ କଣ ସେ ସପ୍ତଷୀରଙ୍କୁ ପାରିବ ଯେ ତାଙ୍କ ଭଉଣୀକୁ ଆଣିବି ? ଏଥର ମଣିମା ମତେ ନିଶ୍ଚୟ ଫାଶିକାଠରେ ଝୁଲାଇବେ ।"

ପୁଅକୁ ସାହସ ଦେଇ ମାଆ ବୁଢ଼ୀ କହିଲା, "ବାପରେ, ତୋ ବାପା ଥିଲେ ଯେ ସବୁବେଳେ କହନ୍ତି ପାରିଲେ ଲୋକକୁ କାମ ବଳାଏ ନାହିଁ । ତୁ କ'ଣ ମୋର ଅପାରିଲା ପୁଅ ? କଥାରେ ଅଛି—କହି ଜାଣିଲେ ମନ କିଣି ହୁଏ, ଲଢ଼ି ଜାଣିଲେ ରାଜ୍ୟ କିଣି ହୁଏ । ତୁ ଯାଆ କି, ବାଟରେ ଯାହାକୁ ଦେଖିବୁ ତାକୁ ଦୁଇପଦ ଭଲକଥା କହି ତାର ମଇତ୍ର ହୋଇଯିବୁ । ତୁ ଯିବା ଏକା ଯିବାକୁ ଡରୁଛୁ, ସାଙ୍ଗସାଥି ହୋଇ ଚଲେ ସେ ସାତଷୀର କଣ ତତେ ବଳେଇ ଯିବେ ? ମୋଟେ ନୁହେ ।"

ମାଆ କଥା ମାନି ବାଣୁଆପୁଅ ସପ୍ତଷୀରଙ୍କ ପର୍ବତ ଆଡ଼କୁ ଚାଲିଲା । କିଛି ବାଟ ଯିବାପରେ ଗୋଟିଏ ଝରଣା ପଡ଼ିଲା । ବାଣୁଆପୁଅ ଦେଖିଲା ଝରଣା କୂଳରେ ଜଣେ ଲୋକ ବସି ଅଞ୍ଜୁଳା ଅଞ୍ଜୁଳା କରି ପାଣି ପିଇଚାଲିଛି । ବାଣୁଆପୁଅ ସେଠାରେ ଠିଆହୋଇ ତା ପାଣିପିଆ ଦେଖିଲା । କିଛି ସମୟ ବିତିଗଲା, ତଥାପି ସେ ଲୋକଟାର ପାଣି ପିଆ ଶେଷ

ହେଲନାହିଁ । ଲୋକଟାର ପାଣିପିଆର ବହୃମ ନାହିଁ ଦେଖି ବାଣୁଆପୁଅ ଭାବିଲା ଏ ଲୋକଟା ନିଶ୍ଚୟ ଜଣେ ଶକ୍ତିଶାଳୀ ଲୋକ ; ଏପରି ଲୋକର ମିତ ହେବା ଉଚିତ । ତେଣୁ ସେ ତା ପାଖକୁ ଯାଇ ତାର ପ୍ରଶଂସା କରି କହିଲା, "ଧନ୍ୟ, ଧନ୍ୟ ଭାଇ, ତୁମପରି ଶକ୍ତିଶାଳୀ ଲୋକ ଆଉ ଦେଖିନାହିଁ ।"

ଲୋକଟି କହିଲା, "ଆହା ହା ! ମିଛରେ କାହିଁକି ମତେ ପ୍ରଶଂସା କରୁଛ, ଭାଇ ? ମୋର ଗୋଟାଏ କ ଶକ୍ତି ! ମହାରାଜାଙ୍କର ଜଣେ ବାଣୁଆ ଅଛି ଯେ ସେ ଏକା ଚାପଡ଼କେ ପଲେ ହାତୀ ମାରିଦେଇପାରିଲା । ସେପରି ଲୋକକୁ କହିବ ଶକ୍ତିଶାଳୀ ଲୋକ ।"

ବାଣୁଆପୁଅ ଖୁସିରେ କହିଦେଲା, "ଆରେ ଭାଇ, ମୁଁ ପରା ସେହି ବାଣୁଆ ।"

"ସତେ ନା ? ··· ଆସ ଆସ, ତୁମର ମୋର ଆଜିଠାରୁ ମଇତ ବସିବା ।" କହି ଲୋକଟି ବାଣୁଆପୁଅକୁ କୁଣ୍ଢାଇ ପକାଇଲା । ପଚାରିଲା, "ଆଚ୍ଛା ମଇତ, ତୁମେ ଏ ପଟକୁ ଆଡ଼କୁ କାହିଁକି ଯାଉଛ ?"

ବାଣୁଆପୁଅ କହିଲା. "ସେ କଥା କଣ କହିବି ମଇତ, ମହାରାଜା ହୁକୁମ କରିଛନ୍ତି ମୁଁ ଯାଇ ସେ ପର୍ବତର ସପ୍ତଭାଇଙ୍କ ସୁନାନାକ୍ଷୀ ଭଉଣୀକୁ ଧରି ଆଣିଲେ ସେ ତାକୁ ବିବାହ କରି ରାଣୀ କରିବେ ।" ଲୋକଟି କହିଲା, "ତା' ହେଲେ ମୁଁ ବି ତୁମ ସହିତ ଆସେ; ଦରକାର ପଡ଼ିଲେ ମୁଁ ବି ତୁମକୁ ସାହାଯ୍ୟ କରିବି ।"

ବାଣୁଆପୁଅ ଖୁସିରେ ପିଆଳିଆକୁ ସଙ୍ଗରେ ନେଇ ଚାଲିଲା । ଦୁଇ ମଇତ ଗପ କରି-କରି ଚାଲିଛନ୍ତି, ବାଟରେ ଗୋଟିଏ କୁଡ଼ିଆ ପଡ଼ିଲା । କୁଡ଼ିଆରେ ଶୋଷେଇ ଚାଲିଥାଏ । ଏ ଦୁହେଁ ସେଠାରେ ପହଞ୍ଚି ଦେଖିଲେ ଜଣେ ଲୋକ ବସି ଥାଳି ପରେ ଥାଳି ଖାନା ଖାଇ ଚାଲିଛି, ପରଷୁଣି ଥାଳି ପରେ ଥାଳି ଖାନା ଆଣି ପରଷି ଦେଉଛି । ଦେଖୁ ଦେଖୁ ସେ ଲୋକ କେତେ ଥାଳି ଯେ ଖାଇଗଲା ତାର ଆଉ ହିସାବନାହିଁ । ତଥାପି ସେ ଆହୁରି ଖାଇଚାଲିଛି ଦେଖି ବାଣୁଆପୁଅ ଭାବିଲା ଏ ଲୋକ ବି ଗୋଟିଏ ବଡ଼ ବିଦ୍ୟା ହାସଲ କରିଛି; ଏପରି ଲୋକର ମିତ ହେବା ଉଚିତ । ତେଣୁ ସେ ଖାଉଣିଆକୁ କହିଲା, "ଭାଇ ତୁମର କି ଅପୂର୍ବ ଶକ୍ତି ! କେତେ ଶକ୍ତି ନଥିଲେ ମଣିଷ ଏପରି ଖାଇ ପାରିବ କହିଲ ? ତୁମକୁ ଧନ୍ୟ କହିବା ।"

ଏ ପ୍ରଶଂସା ଶୁଣି ଖାଉଣିଆ କହିଲା, "ଆରେ ଭାଇ, ମୋର ଏ ଗ୍ରାର ଶକ୍ତି କେତେ ଯେ ତୁମେ ଏପରି ପ୍ରଶଂସା କରୁଛ ? ଶକ୍ତି କହିବ, ମହାରାଜାଙ୍କର ସେହି ବାଣୁଆ ବୀରର ଶକ୍ତିକୁ—ସେ ଏକା ଚାପଡ଼କେ ପଲେ ହାତୀ ମାରିଦେଇପାରିଲେ ଟି ।" ବାଣୁଆପୁଅ କହିଲା, "ଆହେ, ମୁଁ ପରା ସେହି ବାଣୁଆ । ଏ ମୋର ଜଣେ ମଇତ ।"

ଖାଉଣିଆ ବସିବା ଜାଗାରୁ ଉଠିଆସି ବାଣୁଆ ଓ ପିଆଳିଆକୁ ଘର ଭିତରକୁ ପାଛୋଟି ନେଲା । ସେମାନଙ୍କ ସହିତ ମିତ ହୋଇ ସେ ପଚାରିଲା, "ତା' ହେଲେ ମଇତ, ତୁମେ ଦୁଇଜଣ କୁଆଡ଼େ ଯାଉଛ ?" ବାଣୁଆ ସେତେବେଳେ କହିଦେଲା ଯେ ସେ ସପ୍ତଭାଇଙ୍କ

ପର୍ବତକୁ ଯାଉଛୁ, ସେତେବେଳେ ଖାଉଣିଆ କହିଲା, "ତା' ହେଲେ ଭାଇ ମୁଁ ବି ତୁମ ସହିତ ଚାଲୁଛି : ଦରକାର ପଡ଼ିଲେ ମୁଁ ବି ତୁମକୁ ସାହାଯ୍ୟ କରିବି ।"

ବାଣୁଆପୁଅ ତ ଯାହା ଖୋଜୁଥିଲା, ସେ ଖୁସିରେ ତୁଇ ମଇତ୍ରଙ୍କୁ ସାଙ୍ଗରେ ଧରି ସପ୍ତଦ୍ୱୀପରଙ୍କ ପର୍ବତ ଆଡ଼କୁ ଚାଲିଲା । ଚାଲି ହେଁ ଚାଲିଛନ୍ତି, ଦେଖିଲେ ଜଣେ ଲୋକ ଭୂମିରେ କାନଦେଇ ବହୁଦୂରର ଶବ୍ଦ ଶୁଣୁଛି ଓ ଶବ୍ଦ ଶୁଣି ଲୋକଟା ମନକୁମନ କେତେ କଥା କହିଦେଉଛି । ତାର ଏ ଶକ୍ତି ଦେଖି ବାଣୁଆପୁଅ ତାକୁ ପ୍ରଶଂସା ନ କରି ରହିପାରିଲା ନାହିଁ । ତା ପାଖକୁ ଯାଇ କହିଲା, "ବାଃ ! କି ଚମତ୍କାର ଶକ୍ତି ତୁମର ସତେ ! ! ଯେଉଁ ଲୋକ ମାଟି ଉପରେ କାନ ଦେଇ ଏତେ ଦୂରର ଶବ୍ଦ ଶୁଣିପାରୁଛି. ତାଠାରୁ ଶକ୍ତିଶାଳୀ ଲୋକ ଆଉ କିଏ ଥାଇପାରେ କହିଲ ! ଧନ୍ୟ ତୁମର କର୍ଣ୍ଣ ! ତୁମେ ହିଁ ସୁକର୍ଣ୍ଣ !"

ଏସବୁ ପ୍ରଶଂସାବାଣୀ ଶୁଣି ସେ ସୁକର୍ଣ୍ଣ କହିଲା, "ଆହା, ମୋର ଗୋଟାଏ କି ଛାର ଶକ୍ତି ଯେ ମତେ ଏତେ ପ୍ରଶଂସା କରୁଛ ଭାଇ ? ଲୋକ ଅଛନ୍ତି, ଏକା ଚାପଡ଼କେ ପଲେ ହାତୀ ମାରି ଦେଉଛନ୍ତି ; ତୁମେ କ'ଣ ଆମ ରାଜାଘର ସେ ବାଣୁଆପୁଅଙ୍କ କଥା ଶୁଣିଥିବ ; ଶକ୍ତିଶାଳୀ ଲୋକ କହିବ ତ ସେହିପରି ଲୋକକୁ ।" ବାଣୁଆପୁଅ କହିଲା, "ଆହେ, ମୁଁ ପରା ସେହି ବାଣୁଆ । ହେଇଟି ମୋ ମିତ୍ରମାନଙ୍କୁ ଧରି ସପ୍ତଦ୍ୱୀପରଙ୍କ ପର୍ବତକୁ ଯାଉଛୁ ।"

ସୁକର୍ଣ୍ଣ ଧାଇଁ ଆସି ବାଣୁଆପୁଅ ଓ ତା ତୁଇ ମିତ୍ରଙ୍କ ସହିତ ହାତ ମିଳାଇଦେଇ କହିଲା, "ଆଜି ମୋର ଗୋଟିଏ ଭଲଦିନ, ଭାଇ । ସତରେ ତୁମ ସହିତ ଭେଟ ହୋଇ-ଥିବାରୁ ମୁଁ ଭାରି ଖୁସି । ଆଜିଠାରୁ ତୁମେ ମୋର ମଇତ୍ର ହେଲ । ଚାଲ, ମୁଁ ବି ତୁମ ସହିତ ସେ ପର୍ବତକୁ ଯାଏ ; ଦରକାର ପଡ଼ିଲେ ମୁଁ ସାହାଯ୍ୟ କରିବି ।"

ଚାରି ମଇତ୍ର ଗପ କରି ଚାଲିଛନ୍ତି, ଏ ସମୟରେ ଶୁଣିଲେ ସେମାନଙ୍କ ପଛରୁ କେହି ଜଣେ ଲୋକ ପବନ ବେଗରେ ଦୌଡ଼ିଆସୁଛି । ଚାରି ମଇତ୍ର ପଛକୁ ବୁଲି ଚାହିଁଛନ୍ତି, ଲୋକଟା ଅନେକ ଦୂରରୁ ତୀର ମାରିଲା ପରି ଦୌଡ଼ି ଆସିଲା । ସେ ଗୋଟାଏ ଗୋଟାଏ ଡିଆଁରେ ଗୋଟାଏ ଗୋଟାଏ ନଈକୁ ବି ଡେଇଁ ପଡୁଛି । ସେ ଧାଉଡ଼ିଆର ସେ ଅପୂର୍ବ ଶକ୍ତି ଦେଖି ବାଣୁଆପୁଅ ତାକୁ ମନେ ମନେ ପ୍ରଶଂସା କରିବାକୁ ଲାଗିଲା । ଲୋକଟା ଆସି ପାଖରେ ପହଞ୍ଚୁ ପହଞ୍ଚୁ ବାଣୁଆପୁଅ ତାକୁ ଅଟକାଇ ଦେଇ କହିଲା, "ଧନ୍ୟ ଧନ୍ୟ ତୁମ ଶକ୍ତି ଭାଇ ! ମଣିଷ ଯେ ଏତେ ଜୋର୍‌ରେ ଡେଇଁପାରେ, ଏପରି ଭାବେ ଦୌଡ଼ିପାରେ, ଏ କଥା ମୁଁ ଜାଣିନଥିଲି । କେତେ ଶକ୍ତି ନଥିଲେ ଏପରି ଧାଇଁହେବ କହିଲ !"

ଏ କଥା ଶୁଣି ଧାଉଡ଼ିଆ କହିଲା, "ମୋର କି ଶକ୍ତି ଭାଇ ! ଶକ୍ତି ଯଦି ଦେଖିବ, ତେବେ ରାଜାଘର ସେ ବାଣୁଆପୁଅକୁ ଦେଖିବ ଯାଅ । ତୁମେ ତ ଶୁଣିଥିବ—ସେ ଲୋକ ଏକା ଚାପଡ଼କେ ପଲେ ହାତୀ ମାରିଦେଇପାରିଲେ ।"

ବାଣୁଆପୁଅ କହିଲା, "ହଇ ମୁଁ ପରା ସେହି ବାଣୁଆ । ଏମାନେ ସବୁ ମୋ ମଇତ୍ର । ଏମାନେ ବି କମ୍ ଲୋକ ନୁହନ୍ତି । ଆମେସବୁ ଚାଲିଛୁ ସେ ସପ୍ତଦ୍ୱୀପରଙ୍କ ପର୍ବତକୁ ।"

ସଙ୍ଗେ ସଙ୍ଗେ ଧାଉଁଡ଼ିଆ ଆସି ଏ ସୁଜ ମଇତ୍ରଙ୍କୁ ଜଣେଜଣେ କୁଣ୍ଢାଇ ପକାଇ କହିଲା, "ଆଜ ମୋର ଗୋଟିଏ ଶୁଭଦିନ । ମତେ ତୁମର ମଇତ୍ର କରି ନିଅ । ମୁଁ ବି ତୁମ ସାଙ୍ଗରେ ଯିବି । କେତେବେଳେ କେଉଁ କାମ ପଡ଼ିବ, କିଏ କହିବ ? ମୋ ଶକ୍ତିମତେ ମୁଁ ସାହାଯ୍ୟ କରିବି ।"

ଘରୁ ବାହାରିବା ବେଳେ ବାଣୁଆପୁଅ ଏକା ହୋଇ ବାହାରିଥିଲା । ବର୍ତ୍ତମାନ ତା ସାଙ୍ଗରେ ସୁଜଜଣ ଝାଣୁଆ ଲୋକ ମିଶିଗଲେଣି । ସେ ମନେ ମନେ ଖୁସିହୋଇ ମଇତ୍ର-ମାନଙ୍କୁ ନାନା ଗପ କହି କହି ଯାଉଛି, ଦେଖିଲା ଆଗର ପର୍ବତ ତଳ ଗଛଲତାଗୁଡ଼ାକ ଡୋହଲୁଛି ; ଭୂମିଟା ବି କାହିଁକି କମ୍ପୁଛି । କାହିଁକି ଏପରି ହେଉଛି କିଛି ବୁଝିହେଲାନାହିଁ । ପାଞ୍ଚଜଣ ଯାକ ଆଉ ଟିକିଏ ଆଗକୁ ଯାଇ ଗଛଲତା ଗହଳି ଭିତରେ ନଜରେଣି ଗୁହିଁ ଦେଖନ୍ତି ତ ଗୋଟାଏ ରଗଡ଼ା ତଗଡ଼ା ଚନ୍ଦ୍ରକଷ ପହିଲମାନ ବଣର ଏ ମୁଣ୍ଡରୁ ସେ ମୁଣ୍ଡଯାଏଁ ଦଉଡ଼ ଧାପଡ଼ କରୁଛି । ତାର ଗୋଟାଏ ଗୋଟାଏ ପାହୁଲ ପଡ଼ିଲେ ଭୂମି କମ୍ପି ଉଠୁଛି । ବାଣୁଆ-ପୁଅ ଦେଖିଲା ଏ ପହିଲମାନ ଜଣକ କିଛି କମ୍ ଶକ୍ତିଶାଳୀ ଲୋକ ନୁହେଁ ; ଏଭଳି ଲୋକରେ ମିତ ହେବା ଉଚିତ । ତେଣୁ ସେ ତା ପାଖକୁ ଯାଇ କହିଲା, "ଧନ୍ୟ, ଧନ୍ୟ ଭାଇ ତୁମ ଶକ୍ତିକି ! ତୁମପରି ବୀର ମୁଁ କେଉଁଠି ଦେଖିନଥିଲି ।"

ପହିଲମାନ କହିଲା, "ଆହା, ମୁଁ କି ସୁର ! ରଜାଘରେ ଜଣେ ବାଣୁଆ ଅଛନ୍ତି ଯେ, ସେ ଏକା ସାଢକେ ପଲେ ହାତୀ ମାରିଦେଇପାରନ୍ତି । ବୀର କହିବ ତ ସେପରି ଲୋକଙ୍କୁ ।"

ବାଣୁଆପୁଅ ନିଜର ପରିଚୟ ଦେଇ ମହିଲା, "ଭାଇ ମୁଁ ସେହି ବାଣୁଆ । ମଇତ୍ରମାନଙ୍କୁ ନେଇ ସପ୍ତବୀରଙ୍କ ଭଉଣୀକୁ ଆଣିବା ଲାଗି ପର୍ବତ ଉପରକୁ ଯାଉଛି ।" ପହିଲମାନ ବାଣୁଆପୁଅ ସହିତ ହାତ ମିଳାଇ ନେଇ କହିଲା, "ତା' ହେଲେ ଭାଇ, ମତେ ବି ତୁମ ମଇତ୍ର କରିନିଅ । ମୁଁ ବି ତୁମ ସାଙ୍ଗରେ ଯାଏ । ସେ ସପ୍ତବୀର କିଛି ସାଧାରଣ ଲୋକ ନୁହନ୍ତି । ତଥାପି ଆମେ ଛଅ ଜଣ ବି କିଛି କମ୍ ନୋହୁ । ଦେଖିବା ସେମାନେ କିପରି ଆମକୁ ବଳେଇଯିବେ ।"

ବାଣୁଆପୁଅ ଏଥର ତାର ପାଞ୍ଚ ମଇତ୍ରଙ୍କୁ ସାଙ୍ଗରେ ନେଇ ପର୍ବତ ଉପରକୁ ଉଠିଲା । ପର୍ବତ ଉପରେ ପାଦ ଦେଉ ଦେଉ ସପ୍ତବୀର ଆସି ବାଟ ଓଗାଳିଲେ । ସେମାନଙ୍କର ବଡ଼ ଭାଇ ଆସି ଏ ଛଅ ମଇତ୍ରଙ୍କୁ ପଚାରିଲେ, "ତୁମେ ସବୁ କିଏ ସେ ହୋ ? ଆମ ପର୍ବତରେ ତୁମର କି କାମ ?"

ବାଣୁଆପୁଅ କହିଲା, "ତୁମେ ଯେପରି ବୀର ଆମେ ବି ସେପରି ବୀର । ବୀରଙ୍କ ପରି କଥା କହ । ଆମେ ଆସିଛୁ ତୁମ ଭଉଣୀକୁ ମହାରାଜାଙ୍କ ଦରବାରକୁ ନେଇଯିବୁ । ମହାରାଜା ତାଙ୍କୁ ବର୍ଣ୍ଣୀ କରିବାକୁ ମନକରିଛନ୍ତି ।"

ବଡ଼ ଭାଇ କହିଲା, "ତୁମେ ଯଦି ନିଜକୁ ବୀର ବୋଲି କହୁଛ, ତେବେ ଗୋଟେ ପରୀକ୍ଷା ହୋଇଯାଉ । ଦେଖ ଆମ ଦୁଆରେ ସାତ ମାଠିଆ ପାଣି ରଖାଯାଇଛି ; ତୁମେ

ଯଦି ସେ ସାତ ମାଠିଆଯାକ ପାଣି ପିଇଦେଇପାରିବ, ତେବେ ଜାଣିବା ତୁମେ ବୀର ।"

ପିଅନ୍ତିଆ ମଇନ କହିଲା, "ଆହେ ତୁମ ସାତ ମାଠିଆ ପାଣି ଏକା ମତେ କାଇଁକି, ସମସ୍ତେ ପିଇବୁ କିଣ ! କାହିଁ ଦେଖି ସେ ପାଣି ମାଠିଆ ।" ଏ କଥା ଶୁଣି ସପ୍ତବୀରଙ୍କ ବଡ଼ ଭାଇ ସାତ ମାଠିଆ ପାଣି ଆଣି ଥୋଇଦେଲା । ପିଅନ୍ତିଆ ଢକ ଢକ କରି ସେତକ ପାଣି ପିଇ ଦେଇ କହିଲା, "ଏହି କଥାକୁ ଏତେ ଗର୍ଜନ କରୁଥିଲ !! ଆଣ, ତୁମ ଭଉଣୀକୁ ଆମ ସହିତ ଛାଡ଼ିଦିଅ ।"

ଠିକ୍ ଏହି ସମୟରେ ସପ୍ତବୀରଙ୍କ ମଝିଆ ଭାଇ ଚଢ଼ିକି ଆସି ଗର୍ଜନ କଲା, "ଆହେ ରଖ ହେ ତୁମ ବୀରପଣ ! ପାଣି ମନ୍ଦାଏ ପିଇଦେଲ ବୋଲି କେତେ ବଡ଼େଇ କରୁଛ ! କାହିଁ ଆସିଲ ଦେଖି ତୁମ ଭିତରେ କିଏ ସେ ଅଛ—ଆମ ସାତ ଭାଇଙ୍କ ଲାଗି ସାତ ଥାଳି ଖାଦ୍ୟ ବଢ଼ା ହୋଇଛି—ସେଥିରୁ ଗୋଟାଏ ଥାଳି ଯଦି ଖାଇଦେବ ତେବେ ଜାଣିବା ତୁମେ ସତରେ ବୀର ।"

ସଙ୍ଗେ ସଙ୍ଗେ ଖାଉଣିଆ ବାହାରିପଡ଼ି କହିଲା, "କାହିଁ ଆସିଲ, ତୁମର କେତେ ରନ୍ଧା ହୋଇଛି ଦେଖିବା ।" ସମସ୍ତେ ମିଶି ସପ୍ତବୀରଙ୍କ ରନ୍ଧାଶାଳାକୁ ଗଲେ । ସପ୍ତବୀର ଆବାକାବା ହୋଇ ଚାହିଁଛନ୍ତି, ଖାଉଣିଆ ସାତ ଗେଟାରେ ସାତଥାଳି ଖାନା ଖାଇଦେଇ ପଚାରିଲେ, "ଆଉ ରଖିଛ ?—ନାହିଁ ତ ଶୀଘ୍ର ତୁମ ଭଉଣୀକୁ ଆମ ସହିତ ଛାଡ଼ିଦିଅ ।"

ଏଥର ସପ୍ତବୀର ଏ ଛଅଜଣଙ୍କୁ ବୀର ବୋଲି ମାନିଲେ; କିନ୍ତୁ ସେମାନଙ୍କ ସାନ ଭାଇ ଆସି କହିଲା, "ହଁ, ଆମେ ମାନୁଛୁ ତୁମେ ସବୁ ବୀର । କିନ୍ତୁ ଆମ ଭଉଣୀ ତୁମକୁ ବୀର ବୋଲି ମାନିବା ଲାଗି ଗୋଟିଏ ପରୀକ୍ଷା କରିବ । ସେ ପରୀକ୍ଷାରେ ପାରିଲେ ଯାଇ ତୁମେ ଆମ ଭଉଣୀକୁ ନେଇପାରିବ ।"

ବାଣୁଆପୁଅ କହିଲା, "ଠିକ୍ ଅଛି, କ'ଣ ସେ ପରୀକ୍ଷା କହ ।" ସାନ ଭାଇ କହିଲା, "ଏ ପୃଥିବୀ ଶେଷରେ ଗୋଟିଏ ନଦୀ ବୋହିଯାଉଛି ଯେ ସେ ନଦୀର ନାମ ଅମରଜୀବନ । ଆମ ଭଉଣୀ ପ୍ରତିଦିନ ପୃଥିବୀ ଶେଷକୁ ଯାଇ ସେହି ଅମରଜୀବନ ନଦୀରୁ ପାଣି ଆଣେ । ସେ ବର୍ତ୍ତମାନ ପାଣି ଆଣିବାକୁ ଯିବ । ତୁମ ଭିତରୁ କେହି ଜଣେ ତା ସହିତ ଯାଇ ସେ ନଦୀରୁ ପାଣି ଆଣିବାକୁ ପଡ଼ିବ । ତୁମେ ଯଦି ଆମ ଭଉଣୀ ଫେରିବା ଆଗରୁ ଅମରଜୀବନ ନଦୀରୁ ପାଣିନେଇ ଫେରି ଆସି ପାରିବ, ତେବେ ଯାଇ ସେ ତୁମ ସହିତ ରାଜଦରବାରକୁ ଯିବ, ନହେଲେ ତୁମକୁ ଗାଲକେ ଚୂନ, ଗାଲକେ କଳା ଲଗାଇ ଫେରିଯିବାକୁ ପଡ଼ିବ ।"

ଏ କଥା ଶୁଣି ଧାଉଁଡ଼ିଆ ବାହାରିପଡ଼ି କହିଲା, "ମୋ ନାଆଁ ହେଉଛି ଝପଟ ସିଂହ; ଆଜି ପର୍ଯ୍ୟନ୍ତ ମତେ ଦଉଡ଼ରେ କେହି ହଟାଇପାରିନାହିଁ । ଭଲ ହେବ ତୁମ ଭଉଣୀ ସହିତ ଗୋଟାଏ ପରୀକ୍ଷା ହୋଇଯିବ । ତାକୁ ଡକାଅ, ଶୀଘ୍ର ବାହାରୁ ।"

ସପ୍ତବୀରଙ୍କ ସୁନାନାକୀ ଭଉଣୀ ଆସି ଗୋଟିଏ କଳସି ନେଇ ଠିଆ ହେଲା । ଧାଉଁଡ଼ିଆ ଝପଟସିଂହ ବି ଗୋଟିଏ ମାଠିଆ ନେଇ ଠିଆ ହେଲା । ସପ୍ତବୀର ତାଳିମାରି ସେ

ଦୁଇଜଣଙ୍କୁ ଅମରଜୀବନ ନଦୀରୁ ପାଣି ଆଣିବା ଲାଗି ପଠାଇଦେଲେ । ଦୁଇଜଣଯାକ ପବନ ବେଗରେ ଆଗକୁ ମାଡ଼ିଗଲେ । କଏ ଜିଣିବ କଏ ହାରିବ ବୋଲି ଅନ୍ୟମାନେ ହିସାବ କରୁଛନ୍ତି, ସେ ଦୁଇଜଣ ଦୂରରେ ଅଦୃଶ୍ୟ ହୋଇଗଲେ । ଝପଟ ସିଂହ ଯାଇ ପ୍ରଥମେ ଅମରଜୀବନ ନଦୀ କୂଳରେ ପହଞ୍ଚିଗଲା । ସେ ତା ମାଠିଆରେ ମାଠିଆଏ ପାଣି ନେଇ ଫେରିବା ବେଳକୁ ସପ୍ତବୀରଙ୍କ ଭଉଣୀ ଆହୁରି ଅଧାବାଟ ଯାଇ ନଥାଏ । ତାକୁ ବାଟରେ ଦେଖି ଧାଉଁଡ଼ିଆ କହିଲା—"ଦେଖିଲ, ତୁମ ଭାଇମାନେ ମୋ କସ୍ରତ ଜାଣିନଥିଲେ ବୋଲି ଏ ବହପ ଦେଖାଉଥିଲେ । ଏଇଲେ ତୁମେ ହାରିଗଲଟି ?"

ସପ୍ତବୀରଙ୍କ ଭଉଣୀ କହିଲା, "ସତରେ ମୁଁ ତୁମ ସାଙ୍ଗରେ ଦୌଡ଼ି ନ ପାରି ହାରିଗଲି । ତୁମେ ଏତେ ଜୋର୍‌ରେ ଦୌଡ଼ୁଛ, ହାଲିଆ ହୋଇଯିବଣି । ଏ ଗଛ ମୂଳରେ ବସି ଟିକିଏ ହାଲ୍‌ଆମାର, ମୁଁ ଯାଇ ପାଣି ନେଇଆସେ ।"

ସେ କହିଁଲ କଥାରେ ଭୁଲିଯାଇ ଝପଟ ସିଂହ ଗଛମୂଳରେ ବସି ହାଲିଆ ମାରିଲା । ହାଲିଆ ମାରୁ ମାରୁ ସେ କେତେବେଳେ ଯେ ଶୋଇପଡ଼ିଲା ଜାଣି ପାରିଲା ନାହିଁ । ସେ ଆଖି ବୁଜି ଦେବା ସଙ୍ଗେ ସଙ୍ଗେ ସପ୍ତବୀରଙ୍କ ଭଉଣୀ ତା ମାଠିଆର ପାଣିତକ ନିଜ କଳସିରେ ଭରିଦେଇ ଘରମୁହାଁ ହୋଇ ଦୌଡ଼ିଲା । ଏଣେ କଣ ହେଲା ନା, ଝପଟ ସିଂହ କାହିଁକି ଡେରି କଲେ ବୋଲି ବାଣୁଆପୁଅ ବ୍ୟସ୍ତ ହୋଇପଡ଼ିଲା । ତାର ସେ ବ୍ୟସ୍ତତା ଦେଖି ସୁକର୍ଣ୍ଣ ଭୂମିରେ କାନ ଲଗାଇଦେଇ କହିଲା, "ବ୍ୟସ୍ତ ହୁଅନି ମଇତ; ସେ କେଉଁଠି ଅଛି, କଣ କରୁଛି ମୁଁ ଏଇଲାଗେ କହିଦେଉଛି ।" କିଛି ସମୟ ଶବ୍ଦ ବାରିବା ପରେ ସେ ଜଣାଇଦେଲା, "ବଡ଼ ବିଷମ କଥା ଘଟିଲା, ସେଠୁ ଜଣାପଡ଼ୁଛି ଆମ ମଇତ ଗୋଟିଏ ଗଛ ମୂଳରେ ଶୋଇ ଘୁଙ୍ଗୁଡ଼ି ମାରୁଛନ୍ତି; ହୁଏତ ଏ ସପ୍ତବୀରଙ୍କ ଭଉଣୀ କଳସିଏ ପାଣି ଧରି ଏଣିକି ଦୌଡ଼ି ଆସୁଛି । ବର୍ତ୍ତମାନ ଉପାୟ କଣ କହିଲ ?"

ଏ କଥା ଶୁଣି ବୀର ପହିଲମାନ କହିପକାଇଲା "ଆହେ ରହ, ରହ; ମୁଁ ଏଇଲାଗେ ତାଙ୍କ ନିଦ ଭାଙ୍ଗିଦେଉଛି ।" ସଙ୍ଗେ ସଙ୍ଗେ ସେ ଭୂଇଁରେ ପାଦପିଟି ଉଆଁ ଡେଇଁ କରି ମେଦନୀଟାକୁ ଏପରି କମ୍ପାଇଦେଲା ଯେ ଗଛଲତା ପାହାଡ଼ ପର୍ବତ ସବୁ ଦୋହଲିଗଲା । ମନେ ହେଲା ସତେ ଯେପରି ଗୋଟାଏ ଭୂମିକମ୍ପ ହେଉଛି । ସେହି ଦୋହଲାରେ ଧାଉଁଡ଼ିଆ ଝପଟ ସିଂହର ନିଦ ଭାଙ୍ଗିଗଲା । ସେ ଆଖି ମଳି ମଳି ଚାହିଁଦିଏ ତ ତା ପାଖରେ ଖାଲିମାଠିଆଟା ଗଡ଼ୁଛି, ସେଥିରେ ଟୋପାଏ ବି ପାଣି ନାହିଁ; ସପ୍ତବୀରଙ୍କ ଭଉଣୀ ବି ସେଠାରେ ନାହିଁ । 'ଆରେ ମୁଁ କି ଭୁଲ୍ କଲିରେ ' ବୋଲି ଝପଟ ସିଂହ ଏପରି ଗୋଟାଏ ଉଆଁ ମାରି ମାଠିଆ ହାତରେ ସେଠାରୁ ପଳାଇ ଆସିଲା ଯେ ଆଖି ପିଛୁଳାକେ ସେ ଆସି ସପ୍ତବୀରଙ୍କ ଭଉଣୀ ପାଖରେ ଯାଇଗଲା । ପଚାରିଲା, "ହଇହୋ, ତୁମେ ଏଡ଼କି ପାରିବାର" ଏବଂ କୌଣସି ଉତ୍ତରକୁ ଅପେକ୍ଷା ନକରି ସେ ଚଟକରି ତା ହାତରୁ କଳସିଟା ଛଡ଼ାଇ ଆଣି ନିଜ ମାଠିଆରେ ପାଣିତକ ଢାଳିଦେଲା । ସପ୍ତବୀରଙ୍କ ଭଉଣୀ ତ ନିଜେ ଦୋଷ କରିଛି, କହିବ

ଅଉ କଣ ? ସେ ବଲବଲ ହୋଇ ଗୁହିଁଛୁ, ସେପଟ ସିଂହ ପାଣି ମାଠିଆ ଧରି ଏପରି ଉଆଁ ମାରି ପଳାଇଆସିଲା ଯେ ସପ୍ତବୀର କାବା ହୋଇଗଲେ ।

ଏଥର ସପ୍ତବୀର ପରିଜସ୍ଥ ମାନ ନିଜ ସୁନାନାଙ୍କ ଭଉଣୀକୁ ବାଣୁଆପୁଅ ଓ ତା ପାଞ୍ଚମଇତ୍ରଙ୍କ ସାଥିରେ ରାଜଦରବାରକୁ ପଠାଇଦେଲେ । ସତରେ ସେ ଗୋଟିଏ ଉତ୍ତମ ସୁନ୍ଦରୀ କନ୍ୟା, ପୁଣି ତା ପାଖରେ ନାନା ଶକ୍ତିଥାଏ । ସେ କନ୍ୟାକୁ ଦେଖିଦେବା ମାତ୍ରେ ରାଜା ବିବାହର ଆୟୋଜନ ଆରମ୍ଭ କରିଦେଲେ । ମନ୍ତ୍ରୀଙ୍କ ମୁହଁ ଶୁଖି କଳାପଡ଼ିଗଲା । ବିବାହ ଆୟୋଜନ ଚାଲିଥାଏ, ରାଜା ସେ ଉତ୍ତମ ସୁନ୍ଦରୀ କନ୍ୟାକୁ ନେଇ ହାତୀଦାନ୍ତ ନଅର ବୁଲାଇ ଦେଖାଇଲେ । ହାତୀ ଦାନ୍ତର ନଅର ଦେଖୁ ଦେଖୁ ସେ କନ୍ୟା ପଚାରିଲା, "ଏ ନଅରରେ ଏତେ ହାତୀଦାନ୍ତ ଲାଗିଛି; ଆପଣ କଣ ନିଜେ ଏତେ ହାତୀ ମାରି ଦାନ୍ତ ଆଣିଥିଲେ ?"

ରାଜା ଗର୍ବରେ ଗ୍ରୀବ ଫୁଲାଇ କହିଲେ, "ଆମର ଜଣେ ବାଣୁଆ ଅଛି ଯେ ସେ ଏକା ଗୁଳିକେ ପଲେ ହାତୀ ମାରିଦେଲା । ଏ ସବୁ ସେହି ହାତୀମାନଙ୍କର ଦାନ୍ତ ଓ ହାଡ଼ରେ ତିଆରି ହୋଇଛି ।"

ଏଥର ସପ୍ତବୀରଙ୍କ ଭଉଣୀ ପଚାରିଲା, "ଅଚ୍ଛା, ଆପଣ ମୋତେ ବିବାହ କରିବାକୁ କହୁଛନ୍ତି ଯେ, ମୋତେ ମୋ ଭାଇମାନଙ୍କ ପାଖରୁ ଏଠାକୁ ଆଣିଲା କିଏ ସେ ?"

ରାଜା ପୁଣି ସେହି ବାଣୁଆ ପୁଅର ପ୍ରଶଂସା କରି କହିଲେ, "ସେହି ସେଇ ବାଣୁଆ ପଲେ ହାତୀ ମାରିପାରିଥିଲା, ସେହି ବାଣୁଆପୁଅ ଯାଇ ନଥିଲେ ତୁମକୁ ଏଠାକୁ କିଏ ସେ ଆଣିପାରିଥାନ୍ତା ? ସତରେ ସେ ଟୋକାଟାଏ ସିନା ହେଲେ ତାର ଅପାର ଶକ୍ତି । ସେ ଗୋଟାଏ ବୀର । ତାର ବଳ ଓ ମନ୍ତ୍ରୀଙ୍କ ବୁଦ୍ଧିରୁ ଏସବୁ ହୋଇପାରିଛି ।"

ଏହା ଶୁଣି ସପ୍ତବୀରଙ୍କ ଭଉଣୀ ରାଗରେ ଗର୍ଜନ କରି କହିଲା, "ତୁମେ ତାହେଲେ ପରବଳରେ ରାଜା ହୋଇଛ ? ନିଜର ବଳ ନାହିଁ କି ବୁଦ୍ଧି ନାହିଁ, ଏଥିରେ ପୁଣି ମନ୍ତ୍ରୀ କାଟିଦେବ, ଫାଶି କାଠରେ ଚଢ଼ାଇ ଦେବି କହି ଲୋକଙ୍କଠାରୁ ନାନା କାମ ହାସଲ କରୁଛ । ତୁମପରି ଲୋକ ରାଜା ହେବାକୁ ଅଯୋଗ୍ୟ । ତୁମେ ଏ ସ୍ୱାର୍ଥପର ମନ୍ତ୍ରୀର ବୋଲରେ ପଡ଼ି ବାଣୁଆପୁଅ ପରି ବୀରକୁ ମରଣ ମୁହଁକୁ ଠେଲିଦେଇ ମୋପରି ଉତ୍ତମ ସୁନ୍ଦରୀ କନ୍ୟାକୁ ବିବାହ କରିବାକୁ ମନ ବଳେଇଛ । ମୁଁ ସପ୍ତବୀରଙ୍କ ଭଉଣୀ, ମୁଁ ଜଣେ ବୀରକୁ ବିବାହ କରିବି, ତୁମକୁ ନୁହେଁ । ତୁମ ରାଜା ମନ୍ତ୍ରୀ ଦୁହିଙ୍କୁ ମୁଁ ଅଭିଶାପ ଦେଉଛି—ମନ୍ତ୍ରୀ ଏଇଠାରୁ ମୂକ ହୁଅନ୍ତୁ, ତୁମେ ହୁଅ ବିକଳାଙ୍ଗ । ଲୋକେ ଦେଖିବେ, ସ୍ୱା ତା ଅଇଁଠା ଖାଇ ତୁମେ ଏହିଁ ବଞ୍ଚିଥିବ । ମନ୍ଦ ଲୋକକୁ ନିଜ ନିଜ କର୍ମରେ ଭୋଗିଅଭୋଗି ହୋଇ ମରିବ ।"

ସେହିଦିନଠାରୁ ମନ୍ତ୍ରୀ ଓ ରାଜା ମୂକ ଓ ବିକଳାଙ୍ଗ ହୋଇଗଲେ । ସପ୍ତବୀରଙ୍କ ଭଉଣୀ ବାଣୁଆପୁଅକୁ ବିବାହ କଲା । ବାଣୁଆପୁଅ ସେ ରାଜ୍ୟର ରାଜା ହେଲା । ସୁଖ ଶାନ୍ତିରେ ପ୍ରଜା ପାଳିଲା । ତାର ପାଞ୍ଚ ମିତ ମଧ୍ୟ ପଞ୍ଚିକି ତାକୁ ଶାସନ କାମରେ ସାହାଯ୍ୟ କଲେ ।

---

# ମୌନାବତୀ

ଜଣେ ଯୁବରାଜ ଥିଲେ ଯେ ତାଙ୍କ ବିବାହ ଲାଗି ଯେତେ ଆଉ ଯେତେ ପ୍ରସ୍ତାବ ଆସିଲା, କୌଣସିଟା ତାଙ୍କ ମନକୁ ପାଇଲାନାହିଁ । ନାନାଦେଶର ରାଜକୁମାରୀଙ୍କର ଚିତ୍ରପଟ ଦେଖି ଫେରାଇ ଦେଉ ଦେଉ ହଠାତ୍ ଗୋଟିଏ ଚିତ୍ରପଟ ଦେଖି ତାଙ୍କ ଆଖି ଲାଖିରହିଲା । ସେହି ରାଜକୁମାରୀଙ୍କ ରୂପରେ ସେ ଏପରି ମୋହି ହୋଇଗଲେ ଯେ କହିଲେ, "ଯଦି ବିବାହ କରିବେ, ତେବେ ସେହି ରାଜ କୁମାରୀଙ୍କୁ ବିବାହ କରିବେ, ନହେଲେ ଚିରକୁମାର ରହିବେ ।" ଏତେ ଦିନକେ ଯୁବରାଜଙ୍କ ମନଲାଖି ରାଜକୁମାରୀ ମିଳିଛନ୍ତି ବୋଲି ଶୁଣିବା ମାତ୍ରେ ତାଙ୍କ ସାଙ୍ଗ ସୁଖ ଆସି ରୁଣ୍ଡ ହୋଇଗଲେ । ସେମାନେ ମଧ୍ୟ ରାଜକୁମାରୀଙ୍କ ଚିତ୍ରପଟ ଦେଖି ପ୍ରଶଂସା ନ କରି ରହିପାରିଲେନାହିଁ । କିନ୍ତୁ ଏତିକିବେଳେ ଜଣେ ଆତ୍ମୀୟ ଆସି କହିଲେ, "ରାଜକୁମାର, ଏତେ ବଡ଼ ପ୍ରତିଜ୍ଞା କର ନାହିଁ । ମୁଁ ଜାଣେ, ସେ ରାଜକୁମାରୀଙ୍କୁ ବିବାହ କରିବା ଲାଗି କେତେଆଉ କେତେ ରାଜକୁମାର ଗଲେଣି; କିନ୍ତୁ କେହି ତାଙ୍କୁ ବିବାହ କରିପାରୁନାହାନ୍ତି, କି କେହି ସେ ରାଜ୍ୟରୁ ଫେରି ଆସିପାରୁ ନାହାନ୍ତି ।"

ଯୁବରାଜ କିନ୍ତୁ ବଡ଼ ଅବୁଝା । ସେ କହିଲେ, "ତା'ହେଲେ ତ ଆହୁରି ଭଲ କଥା; ସେ ରାଜକୁମାରୀଙ୍କୁ ବିବାହ କରିବାରୁ ମୁଁ ପ୍ରାଣପଣ ଚେଷ୍ଟା କରିବି ।" ଏହା କହି, ଅନ୍ୟମାନଙ୍କର ବାରଣ ନ ମାନି ସେ ସେହି ରାଜକୁମାରୀଙ୍କ ଦେଶକୁ ଯିବାକୁ ବାହାରି ପଡ଼ିଲେ । ଅନେକ ଦିନ ଚାଲିବା ପରେ ସେ ଯାଇ ସେ ଦେଶର ରାଜଧାନୀରେ ପହଞ୍ଚିଗଲେ । ସେଠାରେ ପହଞ୍ଚି ଦେଖିଲେ ଜଣେ ବୁଢ଼ା ଗୋଟିଏ ଚଢ଼େଇ ବିକ୍ରି କରିବା ଲାଗି ଆଣିଛି । ଚଢ଼େଇ କିଣିବା ଲାଗି ଅନେକ ଲୋକ ରୁଣ୍ଡ ହୋଇଛନ୍ତି । ଗ୍ରାହକ ଭିଡ଼ ଦେଖି ବୁଢ଼ା କହିଲା, "ଏତେ ନାହିଁ ସେତେ ନାହିଁ ନିଲାମ ଡାକିବା, ଯାହା ଡାକ ବେଶି ଉଠିବ ସେ ଚଢ଼େଇ କିଣିନେବ ।" ନିଲାମ କଥା ଶୁଣି ଜଣେ ମହାଜନ ପୁଅ କହିପକାଇଲା, "ହଉ ହେଲା—ମୋର ପହିଲି ଡାକ ପାଞ୍ଚଟା ସୁନା ମୋହର ରହିଲା ।"

ତାକୁ ଦେଖି ଅନ୍ୟ ଜଣେ ଡାକିଲା, "ମୋର ଦଶ ।" ଆଉ କେହି ଜଣେ ଡାକିଲା, "ମୋର ପନ୍ଦର ।" ଲୋକ ଗହଳି ଭିତରୁ ପୁଣି କେହି ଜଣେ ଡାକିଲା, "ମୋର କୋଡ଼ିଏ ।" ଏପରି ପାଞ୍ଚ ଦଶ ହୋଇ ଡାକ ବଢ଼ି ଚାଲିଥାଏ । ଏ ଘଟଣା ଦେଖି ଯୁବରାଜ ସେଠାରେ ଠିଆ ହୋଇ ଭାବିଲେ, 'ଚଢ଼େଇଟାର ନିଶ୍ଚୟ କିଛି ଗୋଟିଏ ବଡ଼ଗୁଣ ଥିବ, ନହେଲେ ଶ୍ରୁର ଗୋଟିଏ ଚଢ଼େଇ ଲାଗି ଲୋକେ ଏପରି ଡାକ ଉପରେ ଡାକ ବଢ଼ାଇ ଚାଲିଥାନ୍ତେ ?' ଏହା ଭାବି ସମସ୍ତଙ୍କ ଡାକକୁ ବଳିଯାଇ କହିଦେଲେ, "ମୋ ଡାକ ଶହେ ସୁନା ମୋହର ।"

ଏହି କଥା ଶୁଣି ସମସ୍ତେ ଦବିଗଲେ । ବୁଢ଼ା ଆଉ ଦି ପଇସା ଅଧିକ ପାଇବ ବୋଲି କେତେ ଧନ୍ଦ ହେଲା । କିନ୍ତୁ ଶହେ ଉପରକୁ କେହି ଚଢ଼ିଲେ ନାହିଁ । ଫଳରେ ଯୁବରାଜଙ୍କଠାରୁ ଶହେ ସୁନାମୋହର ଗଣିନେଇ ବୁଢ଼ା ତାଙ୍କ ହାତରେ ଚଢ଼େଇ ପିଞ୍ଜରାଟି ଧରାଇଦେଲା । ଯୁବରାଜ ପିଞ୍ଜରାଟି ଧରି ରାଜାଙ୍କ ନଅର ଆଡ଼କୁ ଚାଲିଛନ୍ତି, ଏ ସମୟରେ ତାଙ୍କ ମନରେ ଆସିଲା, 'ଏତେ ପଇସା ଦେଇ ଚଢ଼େଇ କିଣିଲି, କିନ୍ତୁ କି ଚଢ଼େଇ କିଣିଲି ତାହା ତ ଦେଖିଲି ନାହିଁ ।' ଏହା ଭାବି ସେ ରାସ୍ତା କଡ଼କୁ ଘୁଞ୍ଚିଯାଇ ପିଞ୍ଜରାଟିକୁ ଚାହିଁ ଦିଅନ୍ତି ତ ଦେଖିଲେ ତା ଭିତରେ ଟିକି ଘରଚଟିଆଟିଏ ବସିଛି । ସେ ଦୁଃଖରେ ମୁହଁ ଶୁଖାଇ-ଦେଲେ । ତାଙ୍କ ତୁଣ୍ଡରୁ ବାହାରି ଆସିଲା, "ବୁଢ଼ା ମତେ ଠକିଦେଲା; ଗ୍ରୁର ଘରଚଟିଆଟାଏ ଦେଇ ମୋଠାରୁ ଶହେ ସୁନାମୋହର ମାରିନେଲା !"

ଯୁବରାଜଙ୍କ ପାଟିରୁ ଏ କଥା ବାହାରିଛି କି ନାହିଁ, ପିଞ୍ଜରା ଭିତରୁ ଚଢ଼େଇ କହି-ଉଠିଲା, "ନା ନା ମଣିମା, ସେପରି ଭାବନ୍ତୁ ନାହିଁ । ବୁଢ଼ା ଆପଣଙ୍କୁ ମୋଟେ ଠକି ନାହିଁ । ମୋତେ ଏତେ ଧନ ଦେଇ କିଣିଲେ ବୋଲି ମୋଟେ ମନଦୁଃଖ କରନ୍ତୁ ନାହିଁ । ବେଳ ପଡ଼ିଲେ ନିଶ୍ଚୟ ମୁଁ ମୋ ଶକ୍ତି ଦେଖାଇବି ।"

ଚଢ଼େଇ ମୁହଁରୁ ମଣିଷପରି କଥା ଶୁଣି ଯୁବରାଜ ଆଚମ୍ବିତ ହୋଇଗଲେ । ଚଢ଼େଇଟି ମଣିଷଙ୍କ କଥା ବୁଝିପାରୁଛି ପୁଣି ମଣିଷଙ୍କପରି କହିପାରୁଛି ଦେଖି ସେ କହିଲେ, "ହେଉ ହେଉରେ ବଛା, ତୁ ତାହାହେଲେ ଆଜିଠାରୁ ମୋ ସାଙ୍ଗ ହେଲୁ । ମୁଁ ରାଜଦରବାରକୁ ଯାଉଛି, ତତେ ବି ସାଙ୍ଗରେ ନେଇଯିବି । ଦରକାର ବେଳେ ମତେ ସାହାଯ୍ୟ କରିବୁ ।"

ଚଢ଼େଇ କହିଲା, "ତା' ହେଲେ ଯୁବରାଜ ଗୋଟିଏ କାମ କରନ୍ତୁ । ମୋତେ ଆପଣଙ୍କ ପୋଷାକ ପକେଟ୍‌ରେ ରଖି ପିଞ୍ଜରାଟା ଫୋପାଡ଼ି ଦିଅନ୍ତୁ । ମୁଁ ଲୁଚି ରହିଥିବି, ଦରକାର ବେଳେ ମୋ କଲ୍ଲ କାମ କରିବି ।"

ଯୁବରାଜ ଚଢ଼େଇ କଥାରେ ରାଜି ହୋଇ ତାକୁ ପିଞ୍ଜରାରୁ କାଢ଼ି ପକେଟରେ ପୂରାଇ ଦେଲେ । ତା ପରେ ସେ ରାଜଦରବାରକୁ ଯାଇ ରାଜାଙ୍କୁ ନିଜ ଆସିବାର ଉଦ୍ଦେଶ୍ୟ ଜଣାଇଦେଲେ । ରଜା କହିଲେ, 'ଉତ୍ତମ କଥା । କିନ୍ତୁ ଆମ ଜେମାଙ୍କୁ ବିବାହ କରିବାକୁ ଖାଲି ମନ କଲେ ତ ହେବନାହିଁ, ଯୋଗ୍ୟତା ଥିବା ଦରକାର । ବିବାହ କରିବାକୁ ମନ କରି ଏପରି ଅନେକ ରାଜକୁମାର ଆସିଲେଣି; କିନ୍ତୁ ଆମ ଜେମାଙ୍କୁ ବିବାହ କରିବାକୁ ସମର୍ଥ ହୋଇପାରିନାହାନ୍ତି । ତୁମେ ତ ଆମ ଜେମାଙ୍କ ପଣ ଶୁଣିଥିବ ?"

ଯୁବରାଜ କହିଲେ, "ନା—କଣ ସେ ପଣ ଶୁଣେ ।" ରାଜା ଜେମାଙ୍କ ପଣ କ'ଣ ଶୁଣାଇଦେଲେ । କହିଲେ, "ଗତ ସାତ ବର୍ଷ ହେଲା ଆମ ଜେମା ମୌନବ୍ରତ ଧରିଛନ୍ତି । ଯେଉଁ ଲୋକ ତାଙ୍କ ମୌନବ୍ରତ ଭାଙ୍ଗିଦେଇପାରିବ ସେ ତାକୁ ବିବାହ କରିବ । ଏଥିପାଇଁ ତୁମକୁ ଗୋଟିଏ ଦିନ ସମୟ ଦିଆଯିବ । ଯଦି ସେହି ସମୟ ମଧ୍ୟରେ ଜେମାଙ୍କୁ କଥା କୁହାଇ ପାରିବ ତେବେ ଖାଲି ଯେ ଜେମାଙ୍କୁ ପାଇବ ତା ନୁହେଁ, ଏ ରାଜସିଂହାସନ ମଧ୍ୟ ପାଇବ,

କାରଣ ମୋର ଆଉ ପୁଅ କି ଝିଅ ନାହାନ୍ତି । କିନ୍ତୁ ବିଫଳ ହେଲେ ଅସନ୍ତାକାଲି ସକାଳୁ ଫାଶିକାଠରେ ଝୁଲିବ । ଏହି ହେଲା ଆମ ଜେମାଙ୍କ ପଣ । ତୁମେ ଏଥିରେ ରାଜି ତ ?"

ଯୁବରାଜ ବଡ଼ ଚିନ୍ତାରେ ପଡ଼ିଲେ । କିନ୍ତୁ ଏ ସମୟରେ ଚଢ଼େଇଟି ତାଙ୍କ ପକେଟରୁ ବାହାରି ଫୁର୍‌ର୍ କିନା ଉଡ଼ିଯାଇ କାନ୍ଧ ଉପରେ ବସି ପଡ଼ିଲା ଏବଂ କାନ ପାଖରେ ଫୁସ୍ ଫୁସ କରି କହିଦେଲା, "ମଣିମା, ଡରନ୍ତୁ ନାହିଁ ; ମୁଁ ଆପଣଙ୍କୁ ସାହାଯ୍ୟ କରିବି ।"

ଏତିକି ସାହସ ପାଇ ଯୁବରାଜ କହିଲେ, "ତାହା ହିଁ ହେଉ ମହାରାଜ, ମୁଁ ଏଥିରେ ରାଜି ଅଛି । ଆଉ ବିଳମ୍ବ କାହିଁକି—ଜେମାଙ୍କ ମୌନବ୍ରତ ଭାଙ୍ଗିବା ଲାଗି ମୁଁ ଆଜି ହିଁ ଚେଷ୍ଟା କରିବି ।"

ସେତେବେଳକୁ ବେଳ ଗଡ଼ି ସନ୍ଧ୍ୟା ହେବା ଉପରେ । ଆଉ ବିଳମ୍ବ ନକରି ରାଜା ଯୁବରାଜଙ୍କୁ ସଙ୍ଗରେ ନେଇ ଜେମାଙ୍କ ଉଆସରେ ପହଞ୍ଚିଗଲେ । ଚଢ଼େଇଟି ଉଡ଼ିଯାଇ ଯୁବରାଜଙ୍କ ପକେଟ ଭିତରେ ପଶିଯାଇଥାଏ । ଯୁବରାଜ ଯାଇ ଜେମାଙ୍କ ପାଖରେ ପହଞ୍ଚି ପହଞ୍ଚୁ ଦେଖିଲେ ଯେ ରାଜକୁମାରୀ ଚିତ୍ରପଟରେ ଯେତିକି ସୁନ୍ଦର ଦେଖା ଯାଉଥିଲେ, ପ୍ରକୃତରେ ତାଠାରୁ ଅଧିକ ସୁନ୍ଦରୀ । ସେ ଆତ୍ମହରା ହୋଇ କହିପକାଇଲେ, "ସତରେ ରାଜ ଜେମା, ତୁମକୁ ଦେଖି ମୁଁ ନିଜକୁ ଭାଗ୍ୟବାନ୍ ମନେକରୁଛି ।"

କିନ୍ତୁ ରାଜ ଜେମା କୌଣସି କଥା ନକହି କଣ୍ଢେଇ ପରି ନୀରବରେ ଠିଆ ହୋଇ ରହିଲେ । ଏଥର ରାଜା ଯୁବରାଜଙ୍କୁ କହିଲେ, "ବେଶ୍, ତୁମେ ଏଠାରେ ରହ ; ଆମ ଜେମାଙ୍କ ଦାସୀ ପୋଇଲୀମାନେ ବି ଏହି ବାହାରେ ଜଗି ବସିଥିବେ । ଜେମାଙ୍କୁ କଥା-କୁହାଇବା ଲାଗି ଚେଷ୍ଟା କରିବାକୁ ତୁମକୁ ଆଜି ଦିନଟି ଦିଆଗଲା ; ତେଣିକି ତୁମ ଭାଗ୍ୟ ।" ଏତିକି କହି ରାଜା ସେଠାରୁ ଚାଲିଗଲେ ଓ ପୋଇଲୀମାନେ କୋଠରି ବାହାରେ ଜଗିବସିଲେ । ଯୁବରାଜ ସେପରି ଠିଆହୋଇଥାନ୍ତି ଓ ରାଜକୁମାରୀ ଝରକାବାଟେ ବାହାରକୁ ଅନାଇ-ଥାଆନ୍ତି । ଏପରି କିଛି ସମୟ ବିତିଯିବା ପରେ ରାତି ହୋଇଗଲା । ଦାସୀମାନେ ଘରେ ଆଲୁଅ ଜାଳିଦେଲେ । କିଣ କରି ରାଜଜେମାଙ୍କୁ କଥା କୁହାଇବେ ବୋଲି ଭାବୁ ଭାବୁ ଦୁଃଖରେ ଯୁବରାଜଙ୍କ ପାଟିରୁ ବାହାରି ପଡ଼ିଲା, "ରାଜଜେମା, ସତେ କିଣ ଆପଣ ମୋ ସହିତ କଥା ଭାଷା କରିବେ ନାହିଁ ? ମୁଁ କିଣ ତାହେଲେ ଅନ୍ୟମାନଙ୍କ ପରି କାଲି ସକାଳୁ ଫାଶିକାଠରେ ଝୁଲିବି ?"

ରାଜଜେମା ଶୁଣି ନ ଶୁଣିଲା ପରି ଅନ୍ୟଆଡ଼େ ମୁହଁ ବୁଲାଇ ଦେଲେ । ଏତିକି ବେଳେ ଚଢ଼େଇଟି ଯୁବରାଜଙ୍କ ପକେଟରୁ ବାହାରି ଆସି ତାଙ୍କ କାନ ପାଖରେ ଚୁପ୍ ଚୁପ୍ କରି କହିଦେଲା, "ମଣିମା, ଏ ମୌନାବତୀ ସହଜରେ କଥା କହିବେ ନାହିଁ । ଆପଣ ମୋତେ ଏ କାନ୍ଥ ଆଲମାରି ଭିତରେ ପୁରାଇ ଦିଅନ୍ତୁ । ଦେଖନ୍ତୁ, ଜେମା ଯଦି କଥା ଭାଷା ନ କହନ୍ତି, ତେବେ ଆପଣ ସେ କାନ୍ଥ ଆଲମାରି ସହିତ କଥା ହେବାକୁ ଚେଷ୍ଟା କରନ୍ତୁ ଦେଖିବେ ମୁଁ କିପରି ମଜା କରିବି ।

ଚଢ଼େଇ କଥା ମାନି ଯୁବରାଜ ଗୋପନରେ ତାକୁ ନେଇ ପାଖର କାନ୍ଥ ଆଲମାରି ଭିତରେ ପୂରାଇ ଦେଲେ ; ଜେମା ଅନ୍ୟଆଡ଼େ ଦୃଷ୍ଟି ଥିବାରୁ ଠିକ ଚଢ଼େଇଟିକୁ ମୋଟେ ଦେଖି ପାରିଲେ ନାହିଁ । ଏଥର ଯୁବରାଜ ଜେମାଙ୍କୁ ନରମ କଣ୍ଠରେ ପଚାରିଲେ, "ଆପଣ ତ ଏତେ ବଡ଼ ରାଜ୍ୟର ଜେମା, ଧନ ସମ୍ପଦ କେଉଁଥିରେ କମ୍ ନାହିଁ, ଏଡ଼େ ସୁନ୍ଦର ରୂପ ପାଇଛନ୍ତି—କିଣ ଆଉ ଅଭାବ ଯେ ମୌନବ୍ରତ ଧରିଛନ୍ତି ? ପଦଟିଏ କଥା କହନ୍ତୁ ।"

କିନ୍ତୁ ରାଜଜେମା ପୂର୍ବଭଳି ନୀରବ । ଯୁବରାଜ କହିଲେ, "କାଲି ସକାଳୁ ତାହା-ହେଲେ ମୋର ମରଣ ନିଶ୍ଚିତ । ମଣିଷ ହୋଇ ଯଦି ମଣିଷ ସହିତ କଥାଭାଷା ହେବାର ସୁଯୋଗ ମିଳିଲା ନାହିଁ, ତେବେ ଯାଏ ଅନ୍ତତଃ ଏ ଆଲମାରି ସହିତ ଦୁଇପଦ କଥା ଭାଷା ହେଉ । ସେ କଣ ମୋ ମନକଥା ବୁଝି ଆହା ବୋଲି ପଦେ କଥା କହିବ ନାହିଁ ?"

ଜେମା କିଛି ନ କହି ଚୁପ୍ ରହିଲେ ସିନା, ହେଲେ ମନେ ମନେ ଭାବିଲେ, "ଏଇଟା ଆଉ ଗୋଟାଏ ବୋକା ରଜାପୁଅ । ଭାବୁଛି ଘରର କାନ୍ଥ ବାଡ଼ ବି କଥା କହିବେ । ଛିଃ ଲୋ, ଇମିତି ବୋକା ହାଙ୍ଗରେ ମୁଁ କାଳେ କଥା ହୁଅନ୍ତି ! !"

ଏ ଭିତରେ ଯୁବରାଜ କାନ୍ଥ ଆଲମାରି ପାଖକୁ ଯାଇ କହିଲେ, " ନମସ୍କାର ଆଲମାରି ଭାଇ ; ମୋ ଦୁଃଖ ଦେଖୁଛଟି ?" ଚଢ଼େଇ ଆଲମିରା ଭିତରେ ଥାଇ ପାଟି କରି କହିଲା, "ନମସ୍କାର ମଣିମା ; ମୁଁ ସବୁ ଦେଖୁଛି, ସବୁ ଶୁଣୁଛି । ହେଲେ ମତେ କାଏ ପଚାରୁଛ ଯେ ମୁଁ କହିବ ! କଥା କଣ କି, ଏ ଜେମା ମୂକ ପାଲଟି ଯାଇଛନ୍ତି । ତାଙ୍କର ପାଟି ଫିଟୁ ନାହିଁ, କଥା କହିବା ଶକ୍ତି ନାହିଁ; ସେ ଆଉ କହିବେ କଣ ଯେ ଆପଣ ପଚାରୁଛନ୍ତି ? ଏଠାକୁ ଆସି ଅକାରଣଟାରେ ନିଜର ପ୍ରାଣ ଦେଲ । ଯାହାର ପାଟି ନାହିଁ, କି ଜିଭ ନାହିଁ, ସେ ଏବେ କି କଥା କହିବ ?"

ଏକଥା ଶୁଣି ରାଜଜେମା ରାଗରେ ତମ ତମ ହୋଇଗଲେ । ସେ କହିଆସୁଥିଲେ, "ଧେତ୍ ମୂର୍ଖ ! ମୁଁ କାହିଁକି ମୂକ ହେବ ରେ ? ଦେଖ୍, ମୋର ବି ଜିଭ ପାଟି ଅଛି ।" —କିନ୍ତୁ ସେ ରାଗରେ ପାଟି ଖୋଲି ଦେଉ ଦେଉ ତାଙ୍କର ମନେପଡ଼ିଗଲା ଯେ ସେ ମୌନବ୍ରତ ଧରିଛନ୍ତି । ସଙ୍ଗେ ସଙ୍ଗେ ସେ ଅନ୍ୟଆଡ଼େ ମୁହଁ ବୁଲାଇ ନେଇ ପାଟିରେ ହାତ ଦେଇଦେଲେ । ଏଣେ ଆଲମାରି ଭିତରେ ବସି ଚଢ଼େଇ କହିଚାଲିଲା, "ବରଂ ଆପଣଙ୍କର ଯଦି କଥା ଶୁଣିବାକୁ ମନ, ତେବେ ସେ ଚଉକିରେ ବସନ୍ତୁ, ମୁଁ ଗୋଟିଏ ବଢ଼ିଆ ଗପ କହିବ ; ଶୁଣିଶୁଣି ଅନ୍ତତଃ ରାତିଟା କଟାଇ ଦେବେ ।"

ଯୁବରାଜ ଚଉକିରେ ବସିପଡ଼ି କହିଲେ, "ଧନ୍ୟବାଦ ଭାଇ ; ଗପଟିଏ କହ ଶୁଣିବା ।"

ଚଢ଼େଇ ଗପ ଆରମ୍ଭ କରିଦେଲା—

"ଗୋଟିଏ ଗାଆଁରେ ବଡ଼, ମଝିଆ ଓ ସାନ ହୋଇ ତିନିଭାଇ ଥାଆନ୍ତି । ସେମାନଙ୍କ ବାପା ଜଣେ ବଡ଼ କାରିଗର ଥିଲେ । କଥାରେ ଅଛି ଯାହା ବାପ ତାହା-

ଥାଏ ଘୋଡ଼ା, ତା' ପୁଅ ଚଢ଼େ ଥୋଡ଼ା ଥୋଡ଼ା । ପୁଅ ତିନୋଟି ବି ବାପ ଭଳି କାରିଗର ହୋଇଗଲେ ଓ ବଡ଼ପୁଅ ଏପରି ବଢ଼ିଆ କାଠକାମ କଲା ଯେ ସେ ଗାଆଁର ବଢ଼େଇ ମିସ୍ତ୍ରୀମାନେ ଲାଜରେ ଗାଆଁ ଛାଡ଼ି ପଳାଇଗଲେ । କାଠରେ ନାନା ପ୍ରକାର କୁନ୍ଦକାମ କରି ସେ ଖୁବ୍ ନାଁ କମାଇଲା । ମଝିଆ ଶିଖିଲା ଦରଜି କାମ । ସେ ଏପରି ସୁନ୍ଦର ପୋଷାକପତ୍ର ତିଆରି କଲା ଯେ ସେ ଗାଁର ଅନ୍ୟସବୁ ଦରଜି ନିକମା ହୋଇ ବସି ବସି ଶେଷକୁ ଅନ୍ୟ ଗାଆଁକୁ ଚାଲିଗଲେ ; ସେ ଅଞ୍ଚଳର ଯେତେକ ପୋଷାକ ସିଲେଇ କାମ ସବୁ ଆସି ସେହି ମଝିଆ ପୁଅ ପାଖରେ ଜମା ହେଲା । ସାନ ଭାଇଟି ଶ୍ରେଷ୍ଠ । ସରଳ ମନ । ଛନ୍ଦକପଟ ବୋଲି ତା ମନରେ ପଶି ନ ଥାଏ । ସେ କେବଳ ମନ ପ୍ରାଣ ଦେଇ ଗୀତ ଗାଇବା ଶିଖିଲା । ଗାଇ ଗାଇ ସେ ଏପରି କୋମଳ ମଧୁର ସ୍ୱରରେ ଗାଇବା ଶିଖିଲା ଯେ ଚାଲିଯିବା ଲୋକ ବି ଦଣ୍ଡେ ଠିଆହୋଇ ତା ଗୀତ ଶୁଣେ ।

"କିଛି ଦିନ ପରେ ତିନେ ଭାଇ ନିଜ ନିଜର ଯନ୍ତ୍ରପାତି ଧରି ଦେଶ ବୁଲି ବାହାରିଲେ । ଯେଉଁଠିକି ଗଲେ ସେଠି ପ୍ରଶଂସା ପାଇଲେ । ଏପରି ନାନା ସ୍ଥାନରେ ନାନା ପ୍ରଶଂସା ପାଇ ଯାଉ ଯାଉ ଦିନେ ସେମାନେ ଗୋଟିଏ ପାହାଡ଼ ପାଖରେ ହୋଇଛନ୍ତି ରାତି ହୋଇଗଲା । ପାଖ ଆଖରେ ଗାଆଁ ଗଣ୍ଡା ନାହିଁ ଦେଖି ତିନି ହେଁ ଯାଇ ଗୋଟିଏ ପଥର ଗୁମ୍ଫାରେ ରହିଗଲେ । ରାତି ଅନ୍ଧାରରେ ବଣଜନ୍ତୁ ଆସିଗଲେ ବିପଦ ପଡ଼ିବ ଭାବି ଗୁମ୍ଫା ମୁହଁରେ ଧୂନିଟିଏ ଜାଳିଦେଲେ ଏବଂ କଥା କଲେ ଯେ ତିନିଭାଇ ପାଳି କରି ଗୁମ୍ଫା ଜଗିବେ । ଖିଆପିଆ ସାରି ଶୋଇବା ବେଳକୁ ରାତି ପ୍ରଥମ ପହର ସରିଗଲାଣି । ତେଣୁ ସାନ ଦୁଇଭାଇ ଶୋଇଲେ ଓ ଦ୍ୱିତୀୟ ପହରଟି ବଡ଼ଭାଇ ଜଗିଲା । ଝାଳିଟାରେ ହାତଗୋଡ଼ ବାନ୍ଧି ବସିଲେ କାଳେ ନିଦ ଲାଗିଯିବ ଭାବି ସେ ତା ନିହାଣ ବାଟସି ଧରି ଖଣ୍ଡିଏ କାଠ ଚୁଞ୍ଚୁ ଚୁଞ୍ଚୁ ଗୋଟିଏ ସୁନ୍ଦର ଝିଅ କଣ୍ଢେଇଟିଏ ତିଆରି କରିଦେଲା । ତା କାରିଗର ହାତକୁ ଧନ୍ୟ, ସେତିକି ସମୟ ଭିତରେ ସେ କଣ୍ଢେଇଟିକୁ ଏତେ ସୁନ୍ଦର କରି ଗଢ଼ି ଦେଲା ଯେ ଦେଖିଲେ ମନେହେଲା ଶ୍ରେଷ୍ଠ ଝିଅଟିଏ ଠିଆ ହୋଇଛି । କଣ୍ଢେଇ ତିଆରି ସରିବା ବେଳକୁ ତା ଜଗିବା ପାଳି ବି ସରିଗଲା । ସେ ମଝିଆଁ ଭାଇକୁ ଉଠାଇ ଦେଇ ନିଜେ ଶୋଇପଡ଼ିଲା । ମଝିଆଁ ଭାଇ ସେ ମୂର୍ତ୍ତିଟି ଦେଖି ଭାବିଲା, ଭାଇ ଏଡ଼େ ସୁନ୍ଦର ଝିଅଟିଏ ଗଢ଼ିଛନ୍ତି, ଯା ଦେହକୁ ଯଦି ପୋଷାକଟିଏ ହୁଅନ୍ତା, ତେବେ ବଡ଼ ସୁନ୍ଦର ଦେଖାଯାଆନ୍ତା । ଏହା ଭାବି ସେ ଥଳିରୁ ଛୁଞ୍ଚି, ସୂତା, ଜରି, କନା କଇଞ୍ଚି ଇତ୍ୟାଦି ବାହାର କରି ସେ କଣ୍ଢେଇଟି ଲାଗି ପୋଷାକଟିଏ ତିଆରି କଲା । ତା ପାଳି ଶେଷ ହେବା ବେଳକୁ ସୁନ୍ଦର ପୋଷାକଟିଏ କରି କଣ୍ଢେଇ ଦେହରେ ଖଞ୍ଜିଦେଲାଣି । ସେ ସାନ ଭାଇକୁ ଉଠାଇ ଦେଇ ନିଜେ ଶୋଇପଡ଼ିଲା । ସାନଭାଇ ଉଠି ଦେଖେ ତ ସୁନ୍ଦର ପୋଷାକ ପିନ୍ଧି ଅତି ସୁନ୍ଦର ଝିଅଟିଏ ଗୁମ୍ଫା ଭିତରେ ଠିଆ ହୋଇଛି । ସେ ତା ପାଖକୁ ଯାଇ ଦେଖେ ତ ସେଇଟି ପ୍ରକୃତ ଝିଅ ନୁହେଁ; କଣ୍ଢେଇଟିଏ । ସେ ଭାବିଲା ରାତିକ ଭିତରେ ତା ବଡ଼ଭାଇମାନେ ଏ ସୁନ୍ଦର କଣ୍ଢେଇଟି

ତଆର କରିଛନ୍ତି; କଣ୍ଢେଇଟି ଦେହରେ ଯଦି ପ୍ରାଣ ଥାଆନ୍ତା, ତେବେ ଆହୁରି କେଡ଼େ ସୁନ୍ଦର ଦେଖା ନ ଯାଆନ୍ତା !! ପ୍ରଭୁ ପରମେଶ୍ୱର ଯଦି ଦୟାକରନ୍ତେ, ତେବେ ଏ କଣ୍ଢେଇ ନିଶ୍ଚୟ ପ୍ରାଣ ପାଇଯାଆନ୍ତା । ଏପରି ଭାବି ସେ ମନପ୍ରାଣ ଦେଇ ପ୍ରଭୁଙ୍କୁ ପ୍ରାର୍ଥନା କରି ବସିଲା । ସରଳ ବାଳକଟିର ସେ ପ୍ରାର୍ଥନା ଶୁଣି ପରମେଶ୍ୱରଙ୍କ ହୃଦୟ ତରଳି ଗଲା । ସେ କଣ୍ଢେଇଟି ଦେହରେ ଜୀବନ ଦେଇଦେଲେ । ଝିଅଟି ନାଚ ଖେଳ ହସିବା ବେଳକୁ ରାତି ପାହି ସକାଳ ହୋଇଗଲା । ଅନ୍ୟ ଦୁଇଭାଇ ଉଠି ଦେଖନ୍ତି ତ ସେମାନେ ଯାହାକୁ କଣ୍ଢେଇ କରି ଗଢ଼ିଥିଲେ, ସେ ଜୀବନ୍ତ ହୋଇ ନାଚୁଛି । କିଛି ସମୟ ଆନନ୍ଦରେ ସ୍ତବ୍ଧ ରହିବା ପରେ ବଡ଼ ଭାଇ କହିଲା, 'ଦେଖିଲ, ମୁଁ କମିତି କଣ୍ଢେଇ ଗଢ଼ିଥିଲି ଯେ ସେ ନାଚ କୁଦ ଗୀତ ଗାଉଛି ! ଏ କଣ୍ଢେଇଟି ମୋର ।'

"ଏହା ଶୁଣି ମଝିଆଁ ଭାଇ କହିଲା, 'ନା, ନା ଭାଇ, ତୁମେ ତ ଲଙ୍ଗଳା କଣ୍ଢେଇଟିଏ ଗଢ଼ିଥିଲ । ମୁଁ ତାକୁ ସୁନ୍ଦର ପୋଷାକପତ୍ର ପିନ୍ଧାଇ ମଣିଷପରି କରି ଗଢ଼ିଛି । ତେଣୁ ସେ କଣ୍ଢେଇଟି ମୋର ।'"

"ଏ ବାଦ ବିବାଦ ଶୁଣି ସାନଭାଇ ବିଚରା ଆଉ କଣ କହନ୍ତା ! ଅଚ୍ଛା ରାଜକୁମାର, ଆପଣ କହିଲେ ଦେଖି, ଯତରେ ସେ କଣ୍ଢେଇଟି କାହାର ହେବା ଉଚିତ ?"

ଚଢ଼େଇର ଏ ପ୍ରଶ୍ନ ଶୁଣି ଯୁବରାଜ କହିଲେ, "ଏଥିରେ ଆଉ ପଗ୍ଭରିବାର କଣ ଅଛି ! ବଡ଼ ଭାଇତ କଣ୍ଢେଇଟି ଗଢ଼ିଥିଲା—ସେଇଟା ତା'ର । ତୁମେ କଣ କହୁଛ ?"

କାନ୍ଥ ଆଲମାରି ଭିତରୁ ଚଢ଼େଇ କହିଲା, "ମୁଁ କହୁଛି କଣ୍ଢେଇଟି ସେ ମଝିଆଁ ଭାଇର; ସେ ପରା ତାକୁ ଲୁଗାପଟା ପିନ୍ଧାଇ ମଣିଷକରି ଗଢ଼ିଥିଲା !"

ରାଜକେମା ଆରମ୍ଭରୁ ଏ ଗପଟି ଶୁଣୁଥିଲେ । ସେ ବି ଗପରେ ମଜ୍ଜିଯାଇଥିଲେ । ବର୍ତ୍ତମାନ ଯୁବରାଜ ଓ କାନ୍ଥ ଆଲମାରିର ଏପରି ଯୁକ୍ତିରେ ଚଢ଼ଉଠି ସେ ପାଟିକରି କହିଲେ, "କେଡ଼େ ବୋକା ହୋ, ତୁମେ ଦୁଇଟା ! ସାନ ଭାଇ ମନପ୍ରାଣ ଦେଇ ପ୍ରାର୍ଥନା କରି ନଥିଲେ କଣ୍ଢେଇଟି ପ୍ରାଣ କେଉଁଠୁ ପାଆନ୍ତା ଯେ ଏତେ ପ୍ରଶ୍ନ ଉଠନ୍ତା ? କଣ୍ଢେଇଟି ସେହି ସାନଭାଇ ହିଁ ପାଇବା କଥା···।" ଏତିକି କହିଛନ୍ତି ତାଙ୍କର ମନେପଡ଼ିଗଲା ଯେ ସେ ମୌନବ୍ରତ ଧରିଥିଲେ; ସାତ ବର୍ଷ ଧରି କଥା କହିନଥିଲେ; ବର୍ତ୍ତମାନ ଏହି ଯୁବରାଜଙ୍କ ଫାନ୍ଦରେ ପଡ଼ି ସେ କଥା କହିପକାଇଲେ । ସଙ୍ଗେ ସଙ୍ଗେ ସେ ଦୁଇ ହାତରେ ପାଟି ବନ୍ଦ କରି ଆରପଟକୁ ମୁହଁ ବୁଲାଇ ଦେଲେ । କିନ୍ତୁ ଯୁବରାଜ ତାଙ୍କ ପାଟିରୁ କଥା ଶୁଣି ଖୁସିରେ କହିପକାଇଲେ, "ଯାହାହେଉ, ଆପଣ ମୂକ ପାଲଟି ଯାଇଛନ୍ତି ବୋଲି ଏ ଆଲମାରି ଯାହା କହୁଥିଲା, ତାହା ମିଛ ହୋଇଗଲା । ଦେଖୁଛି ଆପଣ ସୁନ୍ଦର କଥା କହିପାରୁଛନ୍ତି, ଏବଂ ମୁଁ ତାହାହେଲେ ଆପଣଙ୍କୁ କଥା କୁହାଇ ଦେଇ ପାରିଲି, ନା ?"

ସେତେବେଳକୁ ରାତି ପାହି ସକାଳ ହୋଇଗଲାଣି । ଗୁହୁଁ ଗୁହୁଁ ରାଜା ଆସି ଦେଠାରେ

ପହଞ୍ଚିଗଲେ । ସେ ଆସୁ ଆସୁ ଯୁବରାଜଙ୍କୁ ପଚାରିଲେ, "କଣ ରାଜକୁମାର, କଥା କୁହାଇପାରିଲେ ?"

ଯୁବରାଜ କହିଲେ, "ହଁ ମହାରାଜ; ମୁଁ ପ୍ରଥମେ ଭାବିଥିଲି ଯେ ଜେମା ମୂକ ହୋଇ ଯାଇଛନ୍ତି । କିନ୍ତୁ ଦେଖିଲି ସେ ଖୁବ୍ ସୁନ୍ଦର କଥା କହିପାରୁଛନ୍ତି ।"

ରାଜା ଜେମାଙ୍କୁ ପଚାରିଲେ, "ସତେ ଜେମା—ତୁମେ କଥା କହିଲ ?"

ଜେମା ମୁଣ୍ଡ ହଲାଇ ମନାକଲେ; କିନ୍ତୁ ସେତିକି ବେଳକୁ ଦାସୀ ଆସି କହିଲା, "ହଁ, ମଣିମା, ଜେମା ଆଜି ସକାଳୁ ସକାଳୁ ଖୁବ୍ ପାଟିକରି କଥା କହୁଥିବା ମୁଁ ଶୁଣିଛି ।"

ଜେମା କଣ ଆଉ ସତ କଥାଟାକୁ ଲୁଚାଇ ପାରନ୍ତେ ? ସେ ଏଥର ବାଧ ହୋଇ କହିଲେ, "ହଁ ବାପା, ଏ ରାଜକୁମାର ଏପରି ବୋକାମି ଦେଖାଇଲେ ଯେ, ମୁଁ କଥା ନକହି ରହିପାରିଲିନାହିଁ । ବାଧ ହୋଇ କଥା କହି ଦେଲି । କଥା କଣ କ ··"

ସବୁ ଶୁଣି ରାଜା ହସି ହସି କହିଲେ, "ସେଇଟା ତାଙ୍କର ବୋକାମି ନୁହେ ଜେମା, ଚତୁରତା । ସେ ହିଁ ତତେ ବିବାହ କରିବାକୁ ଉପଯୁକ୍ତ ପାତ୍ର ।"

ରାଜା ମହାଆଡ଼ମ୍ବରରେ ଯୁବରାଜଙ୍କ ସହିତ ଜେମାଙ୍କର ବିବାହ କରାଇଦେଲେ । ସେ ଦିହେଁ ସୁଖରେ କାଳ କାଟିଲେ । ଟିକି ଚଢ଼େଇଟି ଲାଗି ଗୋଟିଏ ସୁନା ପିଞ୍ଜରା ଗଢ଼ାଇ ଦେଲେ; ଦୁନିଆର ଚାରିଆଡ଼ୁ ଭଲ ଭଲ ଫଳ ଆଣି ସବୁ ଦିନ ତାକୁ ଖୁଆଇଲେ । ଆଉ ଯେଉଁ କାମ ପଡ଼ିଲା ଚଢ଼େଇର ପରାମର୍ଶ ନେଇ ହିଁ କଲେ ।

## କପୋତକୁମାରୀ

ଅନେକ ଦିନ ତଳର କଥା । ଗୋଟିଏ ବୁଢ଼ୀ ଥାଏ । ତାର ଗୋଟିଏ ବୋଲି ପୁଅ । ପୁଅଟି ନାଆଁ ପା'ଲ । ପା'ଲ ପିଲାଟି କାମରେ ଯେପରି ଗୁଣରେ ସେପରି । ତା ଚେହେରାଟି ବି ସୁନ୍ଦର । କିନ୍ତୁ ଯେତେହେଲେ କଣ ହେବ, ବିଚରା ଗରିବ । ପରଦୁଆରେ ମୂଲ ଲାଗି ଦୁଇପଇସା ରୋଜଗାର କରିବା ଦିନୁ ମାଆ ପୁଅ ଦୁଇ ମୁଠା ଖାଆନ୍ତି । କାମ ନ ମିଳିବା ଦିନ ଘରେ ଚୁଲି ଜଳେନି । ଯାହାହେଉ ଦୁଃଖେ ସୁଖେ ଦିନ ଗଡ଼ି ଚାଲିଥାଏ ।

ଦିନକର କଥା । ପା'ଲ ସେତେବେଳକୁ ସତର ବର୍ଷର ଭେଣ୍ଡା । ଘରକୁ ଫେରୁଛି, ବାଟରେ ଜଣେ ବଣିକଙ୍କ ସହିତ ଦେଖାହୋଇଗଲା । ବଣିକ ତାକୁ ନାଆଁ ଗାଆଁ ପଚାରୁ ପଚାରୁ ତାର କଥାଭାଷା ଶୁଣି ବୁଝିଗଲେ ଯେ ସେ ତାଙ୍କ କାମକୁ ବେଶ୍ ପାରିବ । ତେଣୁ ସେ ତାକୁ ନିଜ ଚାକିରିରେ ରଖିଲେ ।

କେତେଦିନ ପରେ ବଣିକ ପା'ଲକୁ ନେଇ ବିଦେଶ ଯାତ୍ରାରେ ବାହାରିପଡ଼ିଲେ ।

ବଣିକଙ୍କର ଖଣ୍ଡିଏ ସୁନ୍ଦର ଜାହାଜ ଥାଏ । ଜାହାଜରେ ମାଲିକ ଓ ଚାକର ଦୁଇଜଣ ବସିପଡ଼ି ପାଲ ଖୋଲିଦେଲେ । ଜାହାଜରେ ମାଲପତ୍ର ବୋଲି ସେପରି କିଛି ନଥାଏ । ବଣିକ କ ବ୍ୟବସାୟ କରିବା ଲାଗି କେଉଁ ଦେଶକୁ ଯାଉଛନ୍ତି, ପା'ଲ କିଛି ବୁଝିପାରିଲା ନାହିଁ । କିଛିଦିନ ପରେ ଜାହାଜଟି ଯାଇ ପାହାଡ଼ ଜଙ୍ଗଲଭରା ଗୋଟିଏ ସ୍ଥାନରେ ପହଞ୍ଚିଗଲା । ବଣିକ ଜାହାଜଟି ଚଳାଇ ନେଇ ଦୁଇଟି ପାହାଡ଼ ମଝିରେ ଥିବା ଗୋଟିଏ ନଦୀମୁହାଣରେ ବାନ୍ଧି ଦେଲେ ଏବଂ ପା'ଲକୁ ନେଇ କୂଳର ପାହାଡ଼ ଆଡ଼କୁ ଚାଲିଲେ । ଗଲାବେଳେ ହାତରେ ଗୁଡ଼ାଏ ବସ୍ତା ଧରିଥାନ୍ତି । ପାହାଡ଼ ପାଖରେ ପହଞ୍ଚି ପା'ଲ ଦେଖିଲା ସେ ପାହାଡ଼ର ମାଟି ପଥରସବୁ ଏପରି ଶୀତଳ ଧରିଛି ଯେ ତା ଉପରେ ଖରାପଡ଼ି ଚକ୍ ଚକ୍ କରୁଛି ; ସମସ୍ତ ପାହାଡ଼ ଉପରେ ଯେପରି ଶୀତଳର ଗୋଟିଏ ହୋଳ ବସିଯାଇଛି । ପୁଣି ପାହାଡ଼ଗୁଡ଼ାକ ଏପରି ଠିଆ ହୋଇ ଉଠିଯାଇଛି ଯେ ସେ ଉପରକୁ ଚଢ଼ିବା ସହଜ କାମ ନୁହେଁ । ଯାହାହେଉ ଦୁଇ ଚାରିଥର ଝୁଣ୍ଟୁଣ୍ଟା କଚଡ଼ା ଖାଇ କିଛିବାଟ ଯିବାପରେ ବଣିକ କହିଲେ, "ବୁଝିଲୁ ପା'ଲ, ଆମ ପୂର୍ବ ପୁରୁଷର ଲୋକେ ଏ ପାହାଡ଼ ଉପରେ ଅନେକ ମଣିମୁକ୍ତା ଲୁଚାଇ ରଖିଛନ୍ତି । ସେଗୁଡ଼ାକ ସବୁ ବୋହି ନେଇ ଯିବା ଲାଗି ମୁଁ ତୋତେ ନେଇ ଆସିଥିଲି । କିନ୍ତୁ ଏ ଯେଉଁ ଶୀତଳ ହୋଇଛି, ଏଥିରେ ଆମେ ମୋଟେ ଏ ଉପରକୁ ଉଠିପାରିବାନାହିଁ । ତେଣୁ ମୁଁ ଗୋଟିଏ ଉପାୟ ଭାବୁଛି, ତୁ ଯଦି ପାରିବୁ ତେବେ ସେପରି କରନ୍ତେ ।"

ପା'ଲ କହିଲା, "କି ଉପାୟ କହୁନାହାନ୍ତି ? କାମ କରିବାକୁ ଆସିଛି, ପଛେଇବି କାହିଁକି ?"

ବଣିକ ଲୋଭ ଦେଖାଇ କହିଲେ, "ଆରେ ଚାକରି କଥା ଅଲଗା, ଏ କାମ ଅଲଗା । ମୁଁ କହିବା ଅନୁଯାୟୀ ତୁ ଯଦି କାମ କରିବୁ, ତେବେ ତତେ ମୋର ଅଧେ ସମ୍ପତ୍ତି ଦେଇଦେବି । ଦରମାଟା କିଣ୍ଟପ୍ ପାଇବୁ ; ଏଇଟା ଅଧିକ ।"

"ଯାହା ଆପଣ ଠିକ୍ ଭାବିବେ, ତାହା କରିବେ ; ମତେ କଣ କରିବାକୁ ପଡ଼ିବ କହିଲେ !"

ପା'ଲ ସବୁ କାମକୁ ରାଜି ଅଛି ଦେଖି ବଣିକ ନିଜ ସହିତ ଆଣିଥିବା ଗୋଟିଏ ଚମଡ଼ା ଥଳି ବାହାରକରି କହିଲେ, "ତୁ ଏ ଚମଡ଼ା ଥଳି ଭିତରେ ପଶିଯାଆ, ମୁଁ ତତେ ଏଥିରେ ହାଲୁକା କରି ବାନ୍ଧିଦେଇ ଏ ପାହାଡ଼ ତଳେ ପକାଇ ଦେବି । କିଛି ସମୟ ପରେ ଏଠାକୁ ବଡ଼ ବଡ଼ ଚଢ଼େଇ ଆସିବେ । ଚମଡ଼ାଥଳି ଦେଖି, ଚଢ଼େଇ ଖାଇବା ଲୋଭରେ ଏଇଟାକୁ ନେଇ ପାହାଡ଼ ଉପରକୁ ଚାଲିଯିବେ । ତୁ ପାହାଡ଼ ଉପରେ ପହଞ୍ଚିବା ମାତ୍ରେ ଥଳିରୁ ବାହାରି ପଡ଼ିବୁ ; ଶୁଖିଲା ଚମଡ଼ାରୁ କିଛି ଖାଇବାକୁ ନପାଇ ଚଢ଼େଇ ଚାଲିଯିବ । ତୁ ଯଦି ସାଙ୍ଗରେ କିଛି ବସ୍ତା ଧରିଥିବୁ, ତେବେ ମଣିମୁକ୍ତାଗୁଡ଼ାକ ସେଥିରେ ପୂରାଇ ଏ ତଳକୁ ଗଡ଼ାଇଦେବୁ । ବସ୍ତା ନଅଣ୍ଟ ହେଲେ ଅଞ୍ଜୁଳା ଅଞ୍ଜୁଳା କରି ତଳକୁ

ଫୋପାଡ଼ି ଦେଲେ ସେଗୁଡ଼ାକ ଶିଉଳରେ ଖସି ତଳକୁ ଚାଲିଆସିବ ?"

ପା'ଲ ପଚାରିଲା, "କିନ୍ତୁ ମୁଁ ପୁଣି ତଳକୁ ଆସିବି କିପରି ?"

ବଣିକ କହିଲେ, "ସେଇଟା ତ ଅତି ସହଜ କାମ । ଉପରର କାମ ଶେଷ ହେଲେ ତୁ ପୁଣି ଏହି ଥଳି ଭିତରେ ପଶି ଭିତରେପଟୁ ଥଳିର ମୁହଁ ବନ୍ଦ କରିଦେବୁ । କିଛି ସମୟ ପରେ ଚଢ଼େଇମାନେ ପୁଣି ଆସିବେ ଓ ମାଂସ ଖାଇବା ଲୋଭରେ ତତେ ଟେକିଆଣି ପୁଣି ଏଠି ତଳେ ପକାଇଦେବେ ।"

ପା'ଲ କହିଲା, "ଠିକ୍ କଥା । ତା' ହେଲେ ଆଉ ବିଳମ୍ବ କାହିଁକି ? ସେ ଚମଡ଼ା ଥଳିଟା ଆଣନ୍ତୁ. ମୁଁ ସେ ଭିତରେ ପଶିଯାଏ ।"

ବଣିକ ଥଳି ଖୋଲିଧରିଲେ । ପା'ଲ କେତେଟା ବସ୍ତା ଓ ଗୋଟିଏ ଛୁରୀ ଧରି ସେ ଭିତରେ ପଶିଗଲା । ସଙ୍ଗେ ସଙ୍ଗେ ବଣିକ ଥଳିର ମୁହଁଟାକୁ ବାନ୍ଧିଦେଇ ପାହାଡ଼ ତଳେ ଗଡ଼ାଇଦେଲେ । ଅଳ୍ପ କିଛି ସମୟପରେ ସତକୁସତ ଗୋଟାଏ ମସ୍ତବଡ଼ ଚଢ଼େଇ ଉଡ଼ିଆସି ଗୋଟାଏ ଝାମ୍ପରେ ଚମଡ଼ା ଥଳିଟା ଉଠାଇନେଇ ପାହାଡ ଉପରକୁ ଚାଲିଗଲା । ଶୁଖିଲା ଚମଡ଼ାଟାରେ କିଛି ଖାଇବାର ନାହିଁ ଦେଖି ଚଢ଼େଇଟା ସେ ଥଳିଟିକୁ ପାହାଡ଼ ଉପରେ ଛାଡ଼ିଦେଇ ଚାଲିଗଲା । ସଙ୍ଗେ ସଙ୍ଗେ ପାହାଡ଼ ତଳୁ ବଣିକ ଡାକପକାଇଲେ, "ଆରେ ପା'ଲ, ଚଢ଼େଇ ଚାଲିଗଲାଣି—ଶୀଘ୍ର ଥଳିରୁ ବାହାରେ ।"

ପା'ଲ ଥଳିରୁ ବାହାରିପଡ଼ି ଦେଖେତ ସତରେ ସେ ପାହାଡ଼ ଉପରେ କୁଢ଼ କୁଢ଼ ହୋଇ ମଣିମୁକ୍ତା ଗଦାହୋଇଛି । ସେଗୁଡ଼ାକ ଦେଖି ତାର ଆଖି ଝଲସି ଉଠିଲା । ଭାବିଲା— ବଣିକର ପୂର୍ବପୁରୁଷ ନିଶ୍ଚୟ ଖୁବ୍ ଧନୀଥିଲେ । ତେଣେ ପାହାଡ଼ ତଳୁ ବଣିକ ପାଟିକରି ଡାକୁଥାଏ, "ଅରେ ଶୀଘ୍ର ଶୀଘ୍ର କାମ ସାରିଦେ; ଚଢ଼େଇଟା ଯଦି ପୁଣି ଚାଲିଆସିବ, ତେବେ ବଡ଼ ହଇରାଣ କରିବ, ହାତ ଫୁର୍ତ୍ତି କର ।" ପା'ଲ ତା ସାଙ୍ଗରେ ନେଇଥିବା ବସ୍ତାଗୁଡ଼ାକରେ ମଣିମୁକ୍ତା ସବୁ ଭରି ପାହାଡ଼ ତଳକୁ ଗଡ଼ାଇବାକୁ ଲାଗିଲା । ଶିଉଳି ଉପରେ ପଡ଼ି ସେ ବସ୍ତାଗୁଡ଼ାକ ସର୍ ସର୍ ହୋଇ ଖସି ଆସୁଥାଏ । ଏପରି ବସ୍ତା ବସ୍ତା କରି ଗଡ଼ାଇ ଗଡ଼ାଇ ସବୁଗୁଡ଼ାକ ବସ୍ତା ଶେଷ ହୋଇଗଲା; କିନ୍ତୁ ପାହାଡ଼ ଉପରେ ଆହୁରି କେତେ ମଣିମୁକ୍ତା ରହିଗଲା । ଆଉ ବସ୍ତା ନାହିଁ ଦେଖି ପା'ଲ ଅଞ୍ଜୁଳା ଅଞ୍ଜୁଳା କରି ମଣିମୁକ୍ତା ଆଣି ତଳକୁ ପକାଇବାରେ ଲାଗିଲା । ସେ ଏପରି କାମରେ ବ୍ୟସ୍ତ ରହିଥାଏ, ତେଣେ ବଣିକ ସେ ବସ୍ତାଗୁଡ଼ାକ ଟେକିନେଇ ତାର ଜାହାଜରେ ଲଦିବାରେ ବ୍ୟସ୍ତ-ଥାଏ । କିଛି ସମୟ ଭିତରେ ସେ ସବୁ ବସ୍ତା ନେଇ ଜାହାଜରେ ଲଦିଦେଲେ । ତାପରେ ଖୋଲା ମଣିମୁକ୍ତାଗୁଡ଼ାକ ଗୋଟାଇ ଆଉ ଗୋଟାଏ ଦୁଇଟା ବସ୍ତା ବି ଭରିଦେଇ ବୋହି ନେଲେ । ଏପରି ଭାବରେ ସେ ତାର ମନବୋଧକରି ଧନସମ୍ପତ୍ତି ବୋହି ନେଇ ସାରିବା ବେଳକୁ ବି ପା'ଲ ପାହାଡ଼ ଉପରେ ତା କାମ ଶେଷକରିନଥାଏ । ପା'ଲ ଅନେକ ସମୟ ଧରି ମଣିମୁକ୍ତା ଗୋଟାଇ ଗଦାଇବା ପରେ ଯେତେବେଳେ ତଳକୁ ଚାହିଁଲା, ଦେଖିଲା ସେ

ବଣିକ ସେଠାରେ ନାହିଁ କି ତାର ଜାହାଜ ବି ନାହିଁ । ବହୁ ଦୂରରେ ସମୁଦ୍ର ଭିତରେ ଦେଖାଗଲା ବଣିକ ଜାହାଜ ବାହି ପଳାଇଯାଉଛି । ପା'ଲ ଖୁବ୍ ପାଟିକରି ତାକୁ ଡାକପକାଇଲା—କିନ୍ତୁ ବଣିକ ଜାହାଜ ଅଟକାଇଲେନାହିଁ । ପା'ଲ ଜାଣିଗଲା ଯେ ଏ ଗୋଟାଏ ଠକ ବଣିକ, ନିଜ କାମ ହାସଲ କରିବାଲାଗି ତାକୁ ଏଠାକୁ ଆଣିଥିଲା । ସେ ବଡ଼ବଡ଼ ପାହାଡ଼ ଉପରୁ ତଳକୁ ଓହ୍ଲାଇବାଲାଗି ଅନେକ ଚେଷ୍ଟା କଲା—ମାତ୍ର ଖସଡ଼ା ଶିଢ଼ିଲରେ କୌଣସି ପ୍ରକାରେ ଓହ୍ଲାଇପାରିଲାନାହିଁ । ଶେଷରେ କାନମୁଣ୍ଡ ଆଉଁସି ଭାଗ୍ୟକୁ ଆଦରି ସେହି ପାହାଡ ଉପରେ ବସିପଡ଼ିଲା ।

ଦିନ ଯାଇ ରାତି ଆସିଲା; କିନ୍ତୁ କାହିଁ ଆଉ ସେ ଚଢ଼େଇ ଆସିଲା ନାହିଁ । ସେ ଏବେ କରେ କଣ ? ପାହାଡ଼ ଉପରେ ଏଣେ ତେଣେ ବୁଲି ବୁଲି ସେ ଗୋଟିଏ ପଥର ଉପରେ ବସିପଡ଼େ ତ ପଥରଟା ଦୋହଲି ଉଠିଲା । ଏତେ ବଡ଼ ପଥରଟା କାହିଁକି ଏପରି ଦୋହଲୁଛି ଭାବି ପା'ଲ ସେଟାକୁ ଠେଲିଦେବାରୁ ପଥରଟା ଗୋଟାଏ କଡ଼କୁ ଘୁଞ୍ଚିଗଲା—ତା ତଳେ ଦେଖାଗଲା ପାହାଡ଼ ଭିତରକୁ ଗୋଟିଏ କୋରଡ଼ ହୋଇଛି—ସେ ଭିତରେ କେତୋଟି ପାହାଚ ବି ଦେଖାଯାଉଛି । ନିଶ୍ଚୟ ସେ ଭିତରକୁ ଗୋଟିଏ ରାସ୍ତା ପଡ଼ିଛି ଭାବି ପା'ଲ ସେ ଭିତରେ ପଶିଲା । ପାହାଚ ପରେ ପାହାଚ ଓହ୍ଲାଇ ଯାଉ ଯାଉ କେତେ ତଳକୁ ଯେ ସେ ଚାଲିଗଲା କିଛି ଜାଣିପାରିଲାନାହିଁ । ଅନେକ ଦୂର ଗିବାପରେ ଦେଖିଲା ସେ ଆସି ଗୋଟିଏ ମସ୍ତବଡ଼ ଘରେ ପହଞ୍ଚିଯାଇଛି । କେଉଁଠୁ କେଜାଣି ସେ ଭିତରକୁ ଆଲୁଅ ବି ପଡ଼ୁଛି । କିନ୍ତୁ ସେ ଘରେ ଲୋକ ବୋଲି କେହି ନାହାନ୍ତି । ଆଶ୍ଚର୍ଯ୍ୟ କଥା ! ଏତେ ବଡ଼ ଘର; କିନ୍ତୁ ଲୋକ କାହିଁକି ନାହାନ୍ତି ବୋଲି ଖୋଜୁଖୋଜୁ ପା'ଲ ଆସି ଗୋଟିଏ ବଡ଼ତ ଲୋକ ସାମନାରେ ପହଞ୍ଚିଗଲା । ସେ ଲୋକଟି ତାଳଗଛଠାରୁ ବି ଅଧିକ ଉଚ୍ଚ, ତା ମୁଣ୍ଡରେ ଚାରିପାଞ୍ଚ ହାତ ଲମ୍ବ ଜଟ; ତା ପାଟିଟି ଗୋଟିଏ ବଡ଼ଟ କୋରଡ଼ ପରି; କିନ୍ତୁ ତାର ଆଖି ବୋଲି କିଛି ନଥାଏ । ସେ ଗୋଟାଏ ମସ୍ତବଡ଼ ଚଉକିରେ ବସି ଖାଲି ବାହୁନି ହେଉଥାଏ, "ଆରେ ମୋ ପୁଅ କେବେ ଫେରିବୁରେ ! ମୋ ପୁଅକୁ ସେ ଚୋର କେବେ ଫେରାଇବରେ !!"

ପା'ଲ ଦେଖିଲା ଏ ଗୋଟାଏ ଅସୁର, ତା ପୁଅ ବୋଧହୁଏ କେଉଁଆଡ଼େ ଚାଲିଯାଇ ଥିବାରୁ ସେ ତାକୁ ମନେପକାଇ ବାହୁନି ହେଉଛି । ଅସୁରଟାକୁ ଭଲକରି ଦେଖିସାରି ପା'ଲ କହିଲା, "ବାପା, କଣ ଇମିତି କାନ୍ଦୁଛ କି ?"

ଅସୁର ଆନନ୍ଦରେ କହିପକାଇଲା, "ଆରେ ମୋ ପୁଅ ଫେରି ଆସିଲୁ ! ସତରେ ସେ ଚୋର ତତେ ଛାଡ଼ିଦେଲା ! ଆସିଲୁ, ଆସିଲୁ ମୁଁ ତୋତେ ଟିକିଏ ଅଣ୍ଡାଳି ପକାଏ, କେଡ଼େଟିଏ ହେଲୁଣି ଦେଖିବି,—ମୋ ଆଖି ଦୁଇଟା ତ ସେ ନେଇଗଲା, ଦେଖିବି ଆଉ କିପରି !"

ପା'ଲ ସାହସ ଧରି ଅସୁର ପାଖକୁ ଚାଲିଗିବାରୁ, ଅସୁର ତାକୁ ଆଉଁସି ଅଣ୍ଡାଳି ଟେକି ନେଇ ନିଜ କୋଳରେ ବସାଇଦେଲା । ତାକୁ ଗେଲ କରୁକରୁ କହିଲା, "ତୁ ଶୀଘ୍ର ଶୀଘ୍ର ବଡ଼ ହୋଇ ଯାଆ— ବାପା; ବଡ଼ ହୋଇଗଲେ ଘରଦ୍ୱାର ସମ୍ଭାଳିବୁ । ମୁଁ ତ ଆଖି ହରାଇ

ଅନ୍ଧ ହୋଇଗଲି, ଆଉ କେତେ ଦିନ ବା ବଞ୍ଚିବି ? ଆଉ ଚାରିଶ ପାଞ୍ଚଶ ବର୍ଷ ଗଡ଼ିଗଲେ ମୋ ଦିନକାଳ ସରିଲା ।”

ପା'ଲ ମନେ ମନେ କହୁଥିଲା, “ଚାରିଶ ପାଞ୍ଚଶ ବର୍ଷ କମ୍ ହୋଇଛି ଯେ ଏ ଦୁଃଖ କରୁଛି !” ତଥାପି ସେ ସାକୁଟଳିଆ ହୋଇ କହିଲା, “ବାପା, ସେ ସ୍ୱେର କଣ ମତେ ଭଲ ଖାଇବାକୁ ଦେଲ ଯେ ମୁଁ ବଢ଼ିବି ! କେବଳ ଉପାସରେ ମୁଁ ବହୁତ ଦହଗଞ୍ଜ ହୋଇଛି । ଏଥର କିନ୍ତୁ ଘରକୁ ଚାଲିଆସିଲିଣି, ଖାଇପିଇ ବଢ଼ିଯିବି ଯେ ! ତୁମେ ମୋ ପାଇଁ ଚିନ୍ତା କରନାହିଁ ।”

ଅସୁର ସନ୍ତୁଷ୍ଟ ହୋଇ କହିଲା, “ଠିକ୍ କଥା । ହଇରେ, ଆମର ଅଭାବ କଣ ? ଖାନା-ପିନା, ଧନରତ୍ନ ଯାହା ଚାହିଁବୁ ଆମର ତାହା ଅଛି; ଶହେ ପୁରୁଷ ଯାଏ ଭୋଗ କଲେ ବି ଶେଷ ହେବନି । ଆମର ଚାଳିଶି ବଖରା ଗୋଦାମ ଘର ରହିଛି । ସେ ଚାଳିଶି ବଖରାରେ ଚାଳିଶି ରକମ ଜିନିଷ ରହିଛି । ହେଇଟି ନେ, ତୁ ଏ ଚାବିମାଳ ଧର । ଏଥିରୁ ଗୋଟିଏ ଚାବିରେ ଗୋଟିଏ ବଖରା ଖୋଲିବ । କେଉଁ ବଖରାରେ କଣ ଅଛି ତୁ ଚାହିଁ ଖୋଲି ଦେଖ; କିନ୍ତୁ ବାପା, ସେ ଚାଳିଶି ନମ୍ବର ବଖରାଟା ମୋଟେ ଖୋଲିବୁନାହିଁ । ସେ ବଖରା ଖୋଲିଲେ ତୁ ହଇରାଣରେ ପଡ଼ିଯିବୁ; ସେଥିକୁ ସାବଧାନ ।”

ପା'ଲ ଅସୁର ହାତରୁ ଚାବିମାଳ ନେଇ କହିଲା, “ତୁମେ ଯେଉଁ କାମକୁ ମନାକରିବ, ମୁଁ କାହିଁକି ସେ କାମ କରିବି ଯେ ହଇରାଣରେ ପଡ଼ିବି ?” ତାପରେ ସେ ଚାବିମାଳ ନେଇ ବଖରା ବଖରା କରି ଗୋଦାମ ଘରର ଅଣଚାଳିଶିଟିଯାକ ବଖରା ଖୋଲି ସେଗୁଡ଼ିକରେ କଣ ସବୁ ଅଛି ଦେଖିବାକୁ ଲାଗିଲା । ଆଃ ! କଣ ନାହିଁ ? ସେ ଯାହା ଲୋଡ଼ିଲା, ସେ ବଖରା ଗୁଡ଼ିକରେ ତାହା ସବୁ ଭରି ହୋଇ ରହିଥାଏ । ଖୁସିରେ ଖାଇପିଇ ସେ କିଛିଦିନ ବଡ଼ ଆରାମରେ ରହିଗଲା । କିଛିଦିନ ପରେ ସେ ଭାବିଲା, ଅସୁର ସେ ଚାଳିଶି ନମ୍ବର ବଖରାଟି ଖୋଲିବାକୁ ମନାକଲା କାହିଁକି ? ସେଥିରେ କଣ ଅଛି, ନିଶ୍ଚୟ ଦେଖିବି ଭାବି ସେ ଚାଳିଶି ନମ୍ବର ବଖରାର କବାଟଟି ଖୋଲି ଚାହିଁଦିଏ ତ ଦେଖିଲା ସେ କବାଟ ପଛରେ କୌଣସି କୋଠରି ହିଁ ନାହିଁ । କବାଟ ପଛରେ ରହିଛି ଗୋଟିଏ ମସ୍ତବଡ଼ ବଗିଚା । ସେ ବଗିଚାରେ ଭଲ କି ଭଲ ଫୁଲ ଫୁଟିଛି, ଭଲ କି ଭଲ ଫଳ ଫଳିଛି । ନାନା ଜାତିର ଚଢ଼େଇ ସେଠାରେ ଉଡ଼ୁଛନ୍ତି । ପୁଣି ସେ ବଗିଚା ମଝିରେ ଏପରି ସୁନ୍ଦର ପୋଖରୀ ଅଛି ଯେ ଦେଖିଲେ ପେଟ ପୂରିଯାଉଛି । ପା'ଲ ସେ ବଗିଚାର ସୁନ୍ଦର ଦୃଶ୍ୟ ଦେଖୁଛି; ଏ ସମୟରେ ଗୋଟିଏ ସୁନ୍ଦର ଧଳା କପୋତ ଉଡ଼ି ଆସି ସେ ପୋଖରୀ କୂଳରେ ବସିଲା । ଖୁବ୍ ବଡ଼ କପୋତଟିଏ ହୋଇଥାଏ; ସେ ଏଣିକି ତେଣିକି ଚାହିଁ ଏପରି ଜୋର୍‌ରେ ନିଜ ଡେଣା ଦୁଇଟି ଝାଡ଼ିଦେଲା ଯେ ତା ଦେହର ପରଗୁଡ଼ିକ ଗୋଟିଏ ଖୋଳପରି ତଳେ ଖସିପଡ଼ିଲା ଏବଂ ସେ ଭିତରୁ ଗୋଟିଏ ଦିବ୍ୟ ସୁନ୍ଦରୀ ରାଜକୁମାରୀ ବାହାରିପଡ଼ିଲା । ସେ ରାଜକୁମାରୀଙ୍କର ଅପ୍‌ସରା ପରି ରୂପ, ଚକମକିଆ ଆସ୍ତୁଅଳଙ୍କାର ଓ ଝଲମଲିଆ ରେଶମୀ ପୋଷାକରେ ବଗିଚାଟି

ଝଲସି ଉଠିଲା । ସେ ରୂପ ସେ ବେଶ ଦେଖି ପା'ଲ ମୋହିତ ହୋଇଗଲା । ତା ମନରେ ଆସିଲା ସେ ଯଦି ଏପରି ଝିଅଟିଏ ବାହାହୁଅନ୍ତା ତେବେ ସେ ଖୁବ ସୁଖରେ ରହନ୍ତା । ସେ ଏପରି ଭାବୁଛି, ତେଣେ ରାଜକୁମାରୀ ଗାଧୋଇବା ଲାଗି ସେ ପୋଖରୀ ଭିତରକୁ ଓହ୍ଲାଇ-ପଡ଼ିଲେ । ପୋଖରୀରେ ଅନେକ ସମୟ ଖେଳି ପହଁରି ଗାଧୋଇବା ପରେ ସେ ପୁଣି କୂଳକୁ ଅସି ଲୁଗାପଟା ପିନ୍ଧି ପକାଇଲେ ଏବଂ ଯାହୁଁ ଯାହୁଁ ସେ କପୋତର ପର ଖୋଳଟି ଲଗାଇ-ପକାଇ ଗୋଟିଏ ଧଳା କପୋତ ହୋଇଗଲେ । ଏ ଦୃଶ୍ୟ ଦେଖି ପା'ଲ ଆଶ୍ଚର୍ଯ୍ୟ ହୋଇଗଲା, କିନ୍ତୁ ସେ ଧଳା କପୋତଟି ଆଖି ପିଛୁଳାକେ ସେଠାରୁ ଫର୍‌ଫର୍‌କରି ଉଡ଼ି ପଳାଇଗଲା । ପା'ଲ ବଡ଼ବଡ଼ ଦୁଃଖରେ କବାଟ ବନ୍ଦକରି ସେଠାରୁ ଫେରି ଆସିଲା । ସେଦିନ ରାତିରେ ଖିଆପିଆ ବେଳେ ସେ ଅସୁରକୁ କହିଲା, "ବାପା, ମୁଁ ତୁମ ବାରଣ ନମାନି ସେ ବାରଶ ନମ୍ବର ବଖରାଟି ଖୋଲିଦେଇଥିଲି ।"

ଅସୁର କହିଲା, "ମୁଁ ମନା କରିଥିଲି ତଥାପି ଖୋଲିଦେଲୁ ?···ଅଚ୍ଛା ତୁ ସେଠାରେ କଣ ଦେଖିଲୁ ?"

ପା'ଲ କହିଲା, "ଗୋଟିଏ କପୋତକୁମାରୀ ଆସି ସେ ବଗିଚା ପୋଖରୀରେ ଗାଧୋଇଲା । ଅତି ସୁନ୍ଦର ଝିଅଟିଏ ହୋଇଛି । କିନ୍ତୁ ମୁଁ ଚାହିଁଛି, ସେ ଗାଧୋଇ ସାରି ପୁଣି କପୋତ ବେଶ ଧରି ସେଠାରୁ ଉଡ଼ି ଚାଲିଗଲା । ବାପା, ସେ ଝିଅଟି କିଏ ସେ ?"

"ଆରେ ସେ ଯେ ପାରୁ ସେ ହେଉ, ତୁ ଯେତେବେଳେ ତା'କୁ ଦେଖିଦେଲୁଣି ତାହାହେଲେ ଦୁଃଖର ଦିନ ଆସିଗଲା ବୋଲି ଜାଣ ।"

"ଦୁଃଖ ! ମୁଁ ଭାବୁଛି ତାକୁ ଆଉ ଥରେ ଦେଖିଲେ ବାହା ହେବା ପ୍ରସ୍ତାବ ଦିଅନ୍ତି । ସେ ପୁଣି ଆସିବଟି ?"

"ଆସିବ । ତୋ ଭାଗ୍ୟରେ ଥିଲେ ସେ ତତେ ବାହାହେବ ।"

ତା ପରଦିନ କଥା । କପୋତକୁମାରୀ କେତେବେଳେ ଆସିବ ବୋଲି ପା'ଲ ବାରଶ ନମ୍ବର ବଖରାର କବାଟ ଖୋଲି ଚାହିଁଛି, ଏ ସମୟରେ କପୋତକୁମାରୀ ଆସି ପହଞ୍ଚିଲା । ନିଜ ପରଖୋଳଟି ଖୋଲି ଦେଇ ସେ ଯିମିତି ପୋଖରୀ ଭିତରେ ପଶିଯାଇଛି, ପା'ଲ ଯାଇ ଚଟ୍ କରି ସେ ଖୋଳଟି ନେଇଆସିଲା । କପୋତକୁମାରୀ ଚମକି ପଡ଼ିଲା । ସେ ବାସ୍ତବ ଜାଣିନଥିଲା ଯେ ଜଣେ ମଣିଷ ତାକୁ ଚାହିଁଛି । ବର୍ତ୍ତମାନ ଆଉ କରିବ କଣ ? ବାରି ନେହୁରା ହୋଇ ସେ ତା ଖୋଳଟି ମାଗିଲା । କିନ୍ତୁ ପା'ଲ କହିଲା, "ତୁମେ ଯଦି ମୋତେ ବାହା ହେବ ତେବେ ଯାଇ ଏ ଖୋଳଟି ଦେବି ।"

କପୋତକୁମାରୀ କହିଲା, "ମୁଁ ଯଦି ତୁମକୁ ବାହା ହୋଇ ଏଠାରେ ରହିଯିବି ତେବେ ମୋ ବାପା ମୋତେ ଆଉ ଘରେ ପୂରାଇବେନାହିଁ । ସେ ଭାରି ଦୁଷ୍ଟ ।" ପା'ଲ କହିଲା, "ସେ ତାଙ୍କର ଦୁଷ୍ଟ ହେଉଥାନ୍ତୁ । ତୁମେ ତ ଏଇଠି ରହିଯିବ; ତୁମେ ଆଉ କାହିଁକି ଯିବ ଯେ ଏତେ ହଇରାଣ ହେବ ?"

ଏପରି ଯୁକ୍ତିତର୍କ ପରେ କପୋତକୁମାରୀ ପା'ଲକୁ ବିବାହ କରିବାକୁ ରାଜିହୋଇଗଲା । ଅସୁର ମହାଆନନ୍ଦରେ ସେ ଦୁଇଜଣଙ୍କର ବିବାହ କାମ ଶେଷ କରିଦେଇ କହିଲା, "ଏ ଘରେ ମୁଁ ପୁଅ ବୋହୂଙ୍କୁ ନେଇ ସୁଖରେ ରହିବି ବୋଲି ଭାବି ନ ଥିଲି । ଯାହାହେଉ, ଏଥର ଆଉ ମୋ ଉପରେ ବିପଦ ନ ପଡୁ ।" ସତକୁ ସତ ସେ ଅସୁର ଘରେ ଅନେକ ଦିନ ଯାଏ କୌଣସି ରୋଗ କି ବିପଦ ପଡ଼ିଲାନାହିଁ । କପୋତକୁମାରୀର ଗୋଟିଏ ପୁଅ ଓ ଗୋଟିଏ ଝିଅ ଜନ୍ମହେଲେ । ସେମାନେ ତାଙ୍କ ମାଆଠାରୁ ଅଧିକ ସୁନ୍ଦର । ଛୁଆ ପିଲା ନେଇ ଏମିତି ଅନେକ ଦିନ ହସ ଖୁସିରେ କାଟି ଦେବା ପରେ ହଠାତ୍ ଦିନେ ପା'ଲର ତା ମାଆ ବୁଢ଼ୀ କଥା ମନେପଡ଼ିଲା । ତାର ଇଚ୍ଛା ହେଲା ସେ କୌଣସି ପ୍ରକାରେ ଏଠାରୁ ଚାଲିଯାଇ ମାଆକୁ ଦେଖି ଆସିବ । ସେ ଦିନେ ଅସୁର ପାଖରେ ବସି ଗପ କରୁକରୁ କହିଲା, "ବାପା, ଆପଣ ସିନା ମୋତେ ପୁଅ ବୋଲି ଭାବିଛନ୍ତି; କିନ୍ତୁ ମୁଁ ପ୍ରକୃତରେ ଆପଣଙ୍କର ପୁଅ ନୁହେଁ । ମୁଁ ଜଣେ ମଣିଷ··· ।" ତାପରେ ସେ ଅସୁରକୁ ନିଜର ସମସ୍ତ କାହାଣୀ କହିଗଲା । ସବୁ ଶୁଣି ଅସୁର ଦୁଃଖରେ କହିଲା, "ମୋ ନିଜ ପୁଅ ତା'ହେଲେ ଆଉ ଫେରିବନାହିଁ ! ନ ଫେରୁ । ତୁ କିନ୍ତୁ ମୋତେ ମୋ ନିଜ ପୁଅଠାରୁ ଅଧିକ ଭଲପାଉଛୁ, ଏ କଥା ମୁଁ ଜାଣେ । ତେଣୁ ତୋ ଉପରେ ମୁଁ ମୋଟେ ଅସନ୍ତୁଷ୍ଟ ନୁହେ । ତୁ ଯଦି ତୋ ନିଜ ମାଆକୁ ଦେଖିବୁ ବୋଲି ଇଚ୍ଛା କରୁଛୁ, ମୁଁ ତତେ ଅଟକାଇବିନାହିଁ । ମୁଁ ତୋ ପାଇଁ ଗୋଟିଏ ଲୁଚୁକି ବାଟ ଖୋଲି ଦେଉଛି । ତୁ ସେହି ବାଟରେ ଚାଲିଯାଆ । ସାଙ୍ଗରେ ଯେତେ ସମ୍ପତ୍ତି ଚାହିଁବୁ ସେତେ ସମ୍ପତ୍ତି ନେଇଯାଆ । ସୁଖରେ ରହ । କିନ୍ତୁ ତୁ ଯେଉଁ ବାଟରେ ଏଠାରୁ ଯିବୁ, ଆଉ ସେହି ବାଟରେ ଏଠାକୁ ଫେରି ଆସିପାରିବୁ ନାହିଁ ।"

ପା'ଲ ନାନା ପ୍ରକାର ମଣିମୁକ୍ତା ଓ ହୀରାନୀଲା ଧରି କପୋତକୁମାରୀ ଓ ତା ଦୁଇ ପୁଅ ଝିଅଙ୍କ ସହିତ ଅସୁର ଖୋଲିଦେଇଥିବା ଲୁଚୁକି ବାଟଦେଇ ସିଧା ଆସି ନିଜ ଘର ପାଖରେ ପହଞ୍ଚିଗଲା; କିନ୍ତୁ ଘର ପାଖରେ ପହଞ୍ଚିସାରି ପଛକୁ ଚାହିଁ ଦେଏ ତ ସେ ଯେଉଁ ବାଟରେ ଆସିଲା ସେ ବାଟଟା କେଉଁଆଡ଼େ ଅଦୃଶ୍ୟ ହୋଇଯାଇଛି । ଗୋଟିଏ ଦୀର୍ଘନିଃଶ୍ୱାସ ମାରି ପା'ଲ ଆସି ନିଜ ବୁଢ଼ୀ ମାଆ ପାଖରେ ପହଞ୍ଚିଗଲା । ଅନେକ ଦିନ ପରେ ପୁଅକୁ ଦେଖିବାକୁ ପାଇ ବୁଢ଼ୀ ଯେତିକି ଖୁସି ନ ହେଲା, ତା ଠାରୁ ବେଶି ଖୁସି ହେଲା ନାତି ନାତୁଣୀଙ୍କୁ ଦେଖି । ସମସ୍ତେ ସିନା ଖୁସି ହେଲେ; କିନ୍ତୁ କପୋତକୁମାରୀ ନିଜ ବାପମାଆଙ୍କ କଥା ମନେ ପକାଇ ସବୁବେଳେ ମନମାରି ବସିରହିଲା । ଯାହାହେଉ କିଛି ଦିନ ଭିତରେ ପା'ଲ ତା ପାଇଁ ଖଣ୍ଡିଏ ସୁନ୍ଦର ଘର ତିଆରି କରିଦେଲା । ଅସୁର ପାଖରୁ ଆସିବା ବେଳେ ସେ କପୋତକୁମାରୀର ପର ଖୋଳଟି ସଙ୍ଗରେ ନେଇ ଆସିଥିଲା । ଏ ଭିତରେ କପୋତକୁମାରୀ ସେ ଖୋଳଟି ନେଇଯିବା ଲାଗି ଅନେକ ଥର ଚେଷ୍ଟାକରିଛି; କିନ୍ତୁ ପା'ଲ ସେଇଟାକୁ ଏପରି ସାବଧାନରେ ରଖିଥାଏ ଯେ କପୋତକୁମାରୀ ନେଇପାରିନାହିଁ । ନୂଆଘର ତିଆରି ସରିବା ପରେ ଦିନେ ପା'ଲ ତା ମାଆକୁ କହିଲା, "ମାଆ, ମୋ ସ୍ତ୍ରୀର ଏ ପରଖୋଳଟି ମୁଁ

ଦାଣ୍ଡଘର ଖଡ଼ରେ ଲୁଚାଇ ରଖିଦେଉଛୁ । ତୁ ତାକୁ ଏ କଥା ମୋଟେ କହିବୁ ନାହିଁ । ତାର ଏଠାରେ ରହିବାକୁ ମୋଟେ ମନ ନାହିଁ, ଖୋଳଟା ପାଇଗଲେ ମାତ୍ରେ ସେ ପୁଣି କପୋତ ହୋଇ ତା ଦେଶକୁ ଉଡ଼ି ପଳାଇବ । ତେଣୁ ଏ ବିଷୟରେ ଟିକିଏ ସାବଧାନ ।"

ଦିନକର କଥା । ପା'ଲ ଘରେ ନଥାଏ । କପୋତକୁମାରୀ ଶାଶୁ ପାଖକୁ ଆସି କହିଲା, "ମାଆ, ତୁମ ପୁଅ ମୋ ପରଖୋଳଟି ନେଇଯାଇ ମୋତେ ବଡ଼ ଦୁଇଖଣରେ ପକାଇଛନ୍ତି । ଏ ନୂଆ ଘରେ ସେ ଖୋଳଟି କେଉଁଠି ଲୁଚାଇ ରଖିଛନ୍ତି ତୁମେ ଜାଣିଛ କି ?"

ବୁଢ଼ୀ କହିଲା, "ନାହିଁ ଲୋ ମା ମୁଁ ଜାଣେନା ।"

କିନ୍ତୁ କପୋତକୁମାରୀ ଯେତେବେଳେ ଥର ଥର କରି ତିନିଥର ସେହି କଥା ପଚାରିଲା, ସେତେବେଳେ ଶାଶୁବୁଢ଼ୀ ଖପ୍‌ପା ହୋଇ କହିଲା, "ଆଲୋ ଝିଅ, ମତେ ପଚାରୁଛୁ ଯେ ସେ ଦାଣ୍ଡଘର ଖଡ଼ରେ କେଉଁଠି ଲୁଚାଇଛୁ, ମୁଁ କଣ ତାହା ଦେଖିଛୁ ?"

କପୋତକୁମାରୀ କଥାର ମର୍ମ ବୁଝିଗଲା । ସେ ସୁବିଧା ଦେଖି ଦାଣ୍ଡଘର ଖଡ଼ରେ ଚଢ଼ି ଖୋଳଟି ନେଇ ଆସିଲା ଏବଂ ପା'ଲ ପାଇଁ ଖଣ୍ଡିଏ ଚିଠି ଲେଖି ଦେଇ ପରଖୋଳଟି ପିନ୍ଧି ପକାଇଲା । ପୁଅଝିଅ ସେତେବେଳକୁ ଶୋଇଥାନ୍ତି । ସେମାନଙ୍କ ମୁହଁକୁ ଚାହିଁ ଦୁଇଧାର ଲୁହ ବୁହାଇ ଦେଇ କପୋତ କୁମାରୀ ଫୁର୍‌ର୍ କରି ନିଜ ବାପଘରକୁ ଉଡ଼ିଗଲା । ଘରକୁ ଫେରି ପା'ଲ ଯେତେବେଳେ ଦେଖିଲା ଯେ ଘରେ ତା ସ୍ତ୍ରୀ ନାହିଁ; ସେ ସଙ୍ଗେ ସଙ୍ଗେ ଯାଇ ଖଡ଼ ଭିତରଟା ଖୋଜିପକାଇଲା । ପରଖୋଳଟି ନାହିଁ ଦେଖି ସେ ସବୁ କଥା ବୁଝିଗଲା । ବିଚରା ପୁଅଝିଅଙ୍କୁ ଧରି ଅନେକ କାନ୍ଦିଲା । ଏପରି କିଛି ଦିନ କନ୍ଦାକଟା କରିବା ପରେ ଦିନେ ସେ ଦେଖିଲା ଯେ କପୋତକୁମାରୀ ତା ପାଇଁ ଖଣ୍ଡିଏ ଚିଠି ଲେଖି ରଖିଦେଇ ଯାଇଛି । ସେ ସଙ୍ଗେ ସଙ୍ଗେ ଚିଠିଟି ଖୋଲି ପଢ଼ି ବସିଲା । ଚିଠିରେ ଲେଖାଥିଲା—

"ଏତେ ଦିନ ମୁଁ ମୋ ବାପଘର ଛାଡ଼ି ତୁମ ସାଥିରେ ରହିଲି । ତୁମେ ମୋର ପର-ଖୋଳଟି ଲୁଚାଇ ରଖିଥିଲ; କିନ୍ତୁ ସେଇଟି ପାଇଗଲା ପରେ ଆଉ ଏଠାରେ ରହି ପାରୁନାହିଁ । ମୁଁ ମୋ ବାପାଙ୍କ ଘରକୁ ଚାଲିଯାଉଛୁ । ମୋ ପୁଅଝିଅଙ୍କୁ ଅଯତ୍ନ କରିବନାହିଁ । ଯଦି କେବେ ମୋତେ ଦେଖିବାକୁ ଚାହିଁବ, ତେବେ ତୁମର ସେହି ଅସୁର ବାପ ପାଖକୁ ଯାଇ ଚାଳିଶି ନମ୍ବର ବଖରା ବାଟେ ଆମ ଦେଶକୁ ଆସିବ । ଆସିବା ବେଳେ ସେଠାରୁ ଲୁହା ବାଡ଼ି ଧରି, ଲୁହା ଜୋତା ପିନ୍ଧି ଆସିଥିବ, ନହେଲେ ଆମ ଦେଶରେ ଚାଲିପାରିବ ନାହିଁ । ଆସୁ ଆସୁ ଯେଉଁଠି ଦେଖିବ ଚାରିଆଡ଼େ ପର୍ବତ ପାଚେରି ଘେରା ଗୋଟିଏ ବଡ଼ ପଡ଼ିଆ ଭିତରେ ସାତଟି ସାତ ମହଲା ଘର ଅଛି, ଜାଣିବ ସେଇଟି ମୋ ବାପାଙ୍କ ଘର ।"

ଚିଠିଟି ପଢ଼ି ପା'ଲ ଆଖିରୁ ଧାର ଧାର ହୋଇ ଲୁହ ଝରିପଡ଼ିଲା । ସେ ଏବେ କରେ କଣ ? ସେ ଯେଉଁ ବାଟରେ ଅସୁର ଘରୁ ଆସିଥିଲା ସେ ବାଟ ତ କୁହୁକ ବଳରେ ଅଦୃଶ୍ୟ ହୋଇଗଲା । ସମୁଦ୍ର ପଥରେ ସେ ବା ସେଠାକୁ ଯିବ କିପରି ? ଏପରି ମନଦୁଃଖରେ କିଛିଦିନ ବସିବା ପରେ ତାକୁ ଗୋଟିଏ ବୁଦ୍ଧି ଦିଶିଗଲା । ସେ ସେହି ପୂର୍ବର ବଣିକ ପାଖକୁ

ଯାଇ କହିଲା, "ସ୍ୱାମିନେ, ଆପଣଙ୍କ ଲାଗି ମୁଁ ସେ ପାହାଡ଼ ଉପରେ ବସିଛି, ଆପଣ ଏଣେ ପଳାଇ ଆସିଲେ କିପରି ?"

ବଣିକ କହିଲା, "ଆରେ ପା'ଲ, ମୁଁ ଆଉ କଣ କରିବି କହିଲୁ ? ତୋ ଲାଗି ମୁଁ ସେ ପାହାଡ଼ ତଳେ ଜଗି ଜଗି ଥକ୍କା ହୋଇଗଲି । ଦିନଯାଇ ରାତି ହେଲା, ତଥାପି ତୋର ଦେଖା ଦର୍ଶନ ମିଳିଲାନାହିଁ; ଭାବିଲି ତୁ ସେ ଉପରୁ ଆଉ ଆସିବାକୁ ଇଚ୍ଛା କରୁନାହୁଁ, ତେଣୁ ମୁଁ ବାଧ୍ୟହୋଇ ସେଠାରୁ ଜାହାଜ ନେଇ ଚାଲିଆସିଲି ।"

ପା'ଲ କହିଲା, "ଆଜ୍ଞା, ସେ ଉପରେ ଆହୁରି ପଚିଶ ବସ୍ତା ଗଣ୍ଡେ ମଣିମୁକ୍ତା ଜମା ହୋଇଛି । ମୁଁ ତ ସେଗୁଡ଼ାକ ଆଣି ଗଦେଇ ଗଦେଇ ବେଳ ଭୁଲିଗଲି । ଭୋକଶୋଷ ବି କଣ ଲାଗିଲା ? ଦିନରାତି ମୁଁ ଖାଲି ସେଗୁଡ଼ାକ ଧରି ବସିଲି । ଶେଷରେ ମୋ ଚେତାପଶିବା ବେଳକୁ, ଆପଣ ଆଉ ସେଠାରେ ଅଛନ୍ତି ଯେ ମୁଁ ଆସିବି ! ଯାହାହେଉ ବଡ଼ କଷ୍ଟରେ ମୁଁ ସେଠାରୁ ଚାଲିଆସିଛି । ଚାଲନ୍ତୁ ଆଉ ଥରେ ସେଠାକୁ ଯାଇ ମଣିମୁକ୍ତା ଗୁଡ଼ାକ ନେଇ ଆସିବା । ପୂର୍ବପୁରୁଷର ସମ୍ପତ୍ତିଗୁଡ଼ାକ ସେପରି ଆଉ କେତେ ଦିନ ପକାଇ ରଖିବେ ?"

ପା'ଲ କଥା ଶୁଣି ବଣିକ ଆଖିରେ ଲୋଭର ବୋଲ ଲାଗିଗଲା । ସେ ପୁଣି ଜାହାଜ ସଜକରି ପା'ଲକୁ ନେଇ ସେହି ଶିଖର ପାହାଡ଼ ପାଖକୁ ଚାଲିଗଲା ! ପା'ଲ ଗତ ଥର ପରି ଚମଡ଼ା ଖୋଳ ଭିତରେ ପଶି ଚଢ଼େଇ ଆସିବାଯାଏ ଅପେକ୍ଷା କରି ପଡ଼ିରହିଲା; କିନ୍ତୁ ଚଢ଼େଇ ଆସିବାକୁ ଡେରି ହେଲା ନାହିଁ; ତା ସୌଭାଗ୍ୟକୁ ଅଳ୍ପ ସମୟ ମଧ୍ୟରେ ଗୋଟିଏ ଚଢ଼େଇ ଆସି ତାକୁ ଚମଡ଼ା ଖୋଳ ସହିତ ଉଠାଇ ନେଇ ପାହାଡ଼ ଉପରେ ଛାଡ଼ିଦେଲା । ଚଢ଼େଇଟି ତାକୁ ଛାଡ଼ି ଚାଲି ଯାଉ ଯାଉ ପା'ଲ ପୂର୍ବର ସେହି ସୁଡ଼ଙ୍ଗ ବାଟ ଦେଇ ସିଧା ଅସୁରର ପାହାଡ଼ ତଳ ମହଲକୁ ଚାଲିଲା । ବଣିକ ବୁଢ଼ା ଏଣେ ମଣିମୁକ୍ତା ଭରି କରିବା ଲାଗି ବସ୍ତା ଧରି ପାଲକୁ ଡାକ ପକାଇ ଚାଲିଥାଏ, ପା'ଲ ତେଣେ ଯାଇ ଅନ୍ଧ ଅସୁର ପାଖରେ ପହଞ୍ଚିଗଲା । ଅସୁର ବୁଢ଼ା ପା'ଲକୁ ପାଇ ଖୁବ ଖୁସି ହୋଇଗଲା । ପିଲାପିଲିଙ୍କ ଦେହ ପା କଥା ପଚାରି ଅସୁର ଯେତେବେଳେ ସୁଖ ଦୁଃଖ ହେବାକୁ ବସିଲା, ସେତେବେଳେ ପା'ଲ ସବୁକଥା କହି ତାକୁ ଲୁହା ଜୋତା ଓ ଲୁହା ବାଡ଼ି ମାଗିଲା । ଅସୁର ବୁଢ଼ା ସବୁ ଶୁଣି ବଡ଼ ଦୁଃଖ କରି କହିଲା, "ବାପା, ଏ କଥାକୁ ମୁଁ କାହିଁକି ମନାକରିବି ? ଲୁହା ଜୋତା ନେ, ଲୁହା ବାଡ଼ି ନେ, ଶୀଘ୍ର ଯାଇ କୌଣସି ପ୍ରକାରେ ବୋହୂକୁ ଖୋଜି ଆଣ । କିନ୍ତୁ ତା'ର ସେ ଯେଉଁ ବାପ, ସେଇଟା ନିତାନ୍ତ ବଦ୍‌ରାଗୀ ଲୋକ, ସେହି ଚୋର ମୋ ଆଖି ଚୋରାଇ ନେଇଛି । ତୁ ତାକୁ ପାରିଲେ ହେଲା । ଚାଳିଶି ନମ୍ବର କବାଟ ଖୋଲି ଚାଲି ଯା । ବାଟରେ ଯେତେ ଆପଦ ବିପଦ ପଡ଼ୁଛି ଡରିବୁ ନାହିଁ ।"

ପା'ଲ ଲୁହା ଜୋତା ପିନ୍ଧି, ଲୁହା ବାଡ଼ି ଧରି ଚାଳିଶ ନମ୍ବର କବାଟ ଖୋଲି ସେହି ବାଟରେ କପୋତ କୁମାରୀକୁ ଖୋଜିବାକୁ ବାହାରିପଡ଼ିଲା । ଚାଳିଶ ନମ୍ବର କବାଟ ପଛରେ ସେ ଯେଉଁ ବଗିଚାଟି ରହିଥିଲା, ସେ କିଛି ସାଧାରଣ ବଗିଚା ନୁହେ । ସେ ବଗିଚ

ବଗିଚ୍ଚ ପାର ହୋଇ ଅନେକ ବାଟ ଚାଲିବା ପରେ ପା'ଲ ଯାଇ ବଡ଼ ଏକ ମରୁଭୂମିରେ ପହଞ୍ଚିଗଲା । ମରୁଭୂମିର ଯେଣିକୁ ଚାହିଁଲା ତେଣେ ଖାଲି ବାଲି । ଚତୁର୍ଦ୍ଦିଗ ଏକାପରି ଦେଖା-ଯାଉଥାଏ । କେଉଁ ଦଗକୁ ଯିବ, କେଉଁ ଦଗକୁ ନ ଯିବ ସେ କଚ୍ଛୁ ସ୍ଥିରକରିପାରିଲାନାହିଁ । ଏତକ ବେଳେ ସେ ଦେଖିଲା ଥୋଡ଼ାଏ ବାଟ ଆଗରେ ଦୁଇ ଜଣ ଲୋକ ଠିଆହୋଇ କଳି କରୁଛନ୍ତି । କ କଳି ଲାଗିଛି ତାହା ଦେଖିବା ଲାଗି ପା'ଲ ସେମାନଙ୍କ ପାଖକୁ ଯାଇ ଦେଖେ ତ ଲୋକ ଦୁହେଁଟା ଧସ୍ତାଧସ୍ତି ଲଗାଇଛନ୍ତି । ପା'ଲ ନଜର ଲୁହା ବାଡ଼ି ଉଞ୍ଚାଇ ଗର୍ଜନ କରି ସେମାନଙ୍କୁ କହିଲା, "ଏ, ଏ, କାହିଁକି ମିଛରେ କୁକୁରଙ୍କ ପରି କଳି କରୁଛ ? କଳି ବନ୍ଦ କରିବ ନା ନାହିଁ ?"

ଏ ଗର୍ଜନ ଶୁଣି ଲୋକ ଦୁଇଟା ଟିକଏ ଅଟକି ଯାଇ କହିଲେ, "ଆପଣ କଣ ମଧ୍ୟସ୍ଥ ହୋଇ ଆମ କଳି ତୁଟାଇ ପାରିବେ ?"

ପା'ଲ କହିଲା, "କ ଆଶ୍ଚର୍ଯ୍ୟ କଥା କହୁଛ ହୋ ! ଆମ ରାଜ୍ୟରେ ମୁଁ ଶହ ଶହ ଲୋକଙ୍କର କଳି ତୁଟାଉଛି । ତୁମେ ଦୁଇଜଣ ଏପରି କ'ଣ ଯେ ଯେ ତୁମ କଳି ତୁଟିବ ନାହିଁ ? କାହିଁକି କଳି କରୁଛ ଶୁଣେ ।"

ପା'ଲ ମୁହଁରୁ ଏତକ ଶୁଣିଦେବାମାତ୍ରେ କଳି କରୁଥିବା ଲୋକ ଦୁଇଟି ଭାବିଲେ ଏ ନିଶ୍ଚୟ ଜଣେ କେହି ବଡ଼ ରାଜା ହେବେ । ତେଣୁ ସେମାନେ କଳି ବନ୍ଦକରି ସେମାନଙ୍କର କଳିହେବାର କାରଣ କହି ବସିଲେ । କଥା କଣ କ, ସେମାନେ ଜଣେ ଅସୁରଠାରୁ ଝଣ୍ଟିଏ ଆସନ, ପଟେ ଖଣ୍ଡା ଓ ଗୋଟିଏ ଟୋପି ଚୋରାଇ ଆଣିଥିଲେ । ସେ ତିନୋଟି ଜିନିଷକୁ ଏମାନେ ଦୁଇଜଣ ସମାନ ଭାବରେ ଭାଗ କରିନପାରି କଳି ଆରମ୍ଭ କରିଛନ୍ତି । ଏ କଥା ଶୁଣି ପା'ଲ କହିଲା, "ଛିଃ, ଛିଃ, ଛିଃ, ଇମିତି ଚୋର ତିନୋଟା ଜିନିଷ ଲାଗି ତୁମେ ଦୁହେଁଟା ଏ ବାଟ ମଝିରେ କଳିକରୁଛ ! ହଇରେ, ଚୋରିମାଲ ଭାଗ ବାଣ୍ଟିବା ଲାଗି ତୁମକୁ ଆଉ ସ୍ଥାନ ମିଳିଲା ନାହିଁ ଯେ ଏଇଠି ଧସ୍ତାଧସ୍ତି ହେଉଛ ?"

ଏ ଗାଳି ଶୁଣି ସେମାନଙ୍କ ଭିତରୁ ଜଣେ କହିଲା, "ହଜୁର, ଆପଣ ସବୁ ବିଷୟ ଜାଣି ନାହାନ୍ତି ବୋଲି ଏଗୁଡ଼ାକୁ ଚୋର ଜିନିଷ ବୋଲି କହୁଛନ୍ତି । କନ୍ତୁ ଏ ଯେଉଁ ଆସନ ଝଣ୍ଟିକ ଅଛି, ଏ ଗୋଟିଏ ମନପବନ ଆସନ; ଏଥିରେ ବସିପଡ଼ି ଯେଉଁଠିକି ନେ ବୋଲି କହିବେ, ଏ ସେଇଠିକି ନେଇଯିବ । ଏ ଯେଉଁ ଖଣ୍ଡା ପଟକ ଦେଖୁଛନ୍ତି ଏ ଗୋଟିଏ ମାରମାର ଖଣ୍ଡା ଏକୁ ଖାଲି ମାର ମାର ବୋଲି କହିଦେଲେ ଏ ଆପେ ଆପେ ବୁଲି ବୁଲି ଶତ୍ରୁକୁ ବନାଶ କରିଦେବ ।"

ପା'ଲ କହିଲା, "ଠିକ ଅଛି, ତୁମ କଥା ଯଦ ସତ ତେବେ ଆସନ ଜଣେ ନେଉ, ଆର ଜଣେ ଖଣ୍ଡା ନେବ ।"

ଦ୍ୱିତୀୟ ଲୋକଟି ବାହାରପଡ଼ି କହିଲା, "କନ୍ତୁ ଏ ଟୋପିଟା ? ଟୋପିଟି କଏ ନେବ ? ମୁଁ କହୁଛି ମୁଁ ଆଗ ବାହାରିଥିଲି, ତେଣୁ ମୁଁ ଟୋପିଟା ନେବ । ଏ ଲୋକଟାଏ

କୁହୁକ ଟୋପି ହଜୁର !"

ପ୍ରଥମ ଜଣକ କହିଲା, "ଅଗ ବାହାରିଥିଲେ କଣ ହେଲା, ମୁଁ ସେଗୁଡ଼ିକ ଆଣିଲି—ମୋର ଜିନିଷରେ ତୋର କି ଅଧିକାର ।"

ଦୁହେଁ ପୁଣି କଳି ଆରମ୍ଭ କରିଦେଲେ । ପା'ଲ ଦେଖିଲା ଏ ଜିନିଷ ତିନୋଟିର ଯଦି ସତରେ ଏପରି ଗୁଣ ଥିବ, ତେବେ ଏଗୁଡ଼ିକ ତାର ବିଶେଷ କାମରେ ଆସିବ । ତେଣୁ ସେ ଲୁହାବାଡ଼ି ଉଞ୍ଚାଇ ପୁଣି ଗର୍ଜନ କରି କହିଉଠିଲା, "ଏ, ଏ ଚୋର ଦୁଇଟା; ମୋତେ ମଧ୍ୟସ୍ଥ ବୋଲି ମାନି ମୋର ଆଗରେ ପୁଣି କଳି କରୁଛ ? ଏ ଲୁହା ବାଡ଼ିର କରାମତି ଜାଣିଛଟି ? ଚୁପ୍ ହୋଇ ଠିଆହୁଅ କହୁଛି ।"

ଲୋକ ଦୁଇଟା କଳହ ବନ୍ଦକରି ଚୁପ୍ ହୋଇ ଠିଆହେବା ପରେ ପା'ଲ କହିଲା, "ଏସବୁ ବର୍ଣ୍ଣନା କରିଗଲ ଯେ, ଏ ଜିନିଷଗୁଡ଼ିକ ଅସଲ କି ନକଲି କେବେ ପରୀକ୍ଷା କରି ଦେଖିଛ ! ଯଦି ଅସଲ୍ ଜିନିଷ ହୋଇନଥିବ, ତେବେ ମୁଁ କିଆଁ ବୃଥାରେ ତୁମ ପାଇଁ ମୁଣ୍ଡ ଖର୍ଚ୍ଚ କରିବି କହିଲ ?"

ଲୋକ ଦୁଇଟା ହାତ ମଳି ମଳି କହିଲେ, "ହଜୁର, କଥାଟା ଆମକୁ ସତ ଆପଣଙ୍କୁ ମିଛ । ଆମେ ନିଜେ ପରୀକ୍ଷା କରିନାହୁଁ; ହେଲେ ଆମେ ଜାଣୁ ସେ ଅସୁର ଏ ସବୁ ବ୍ୟବହାର କରୁଥିଲା ।"

ପା'ଲ କହିଲା, "ହେଃ ବୋକା କୋଉଠିକାର ! ଆରେ ଯାହା ନ ଦେଖିବ ଦୁଇ ନୟନେ ପରତେ ନ ଯିବ ଗୁରୁବଚନେ । ତୁମେ ଦୁଇଟା ଏଠାରେ ବିନା ସୂତାରେ ହାଟ ଲଗେଇଦେଇଛ ! କାହିଁ, ଆଣିଲ ଯେ ଆସନ—ପକାଅ ଏଠି ।"

ଲୋକ ଦୁଇଟା ଆସନଟି ଆଣି ବିଛାଇ ଦେଲେ । ପା'ଲ ସେ ଆସନରେ ବସି କହିଲା—କାହିଁରେ ମନପବନ ଆସନ, ମତେ ହାତେ ଉପରକୁ ଉଠାଇଦେଲୁ ।

ଆସନଟା ଆଖି ପିଛୁଳାକେ ବାଲି ଉପରୁ ହାତେ ଉପରକୁ ଉଠି ସେଇଠି ଅଟକି-ଗଲା । ପା'ଲ କହିଲା, "ତା' ହେଲେ ଏ ଆସନ କଥାଟି ଠିକ୍ । ଆଚ୍ଛା ସେ ଟୋପିଟି ଆଣ । ସେ ଟୋପିର କି ଗୁଣ ଅଛି ?"

ତା ହାତକୁ ଟୋପିଟି ବଢ଼ାଇଦେଇ ସେମାନେ କହିଲେ, "ହଜୁର, ଏ ଟୋପି ପିନ୍ଧି ପକାଇଲେ ମଣିଷ ଅଦୃଶ୍ୟ ହୋଇଯିବ ।"

ପା'ଲ ହସି ହସି କହିଲା, "ଏ ସବୁ ଜିନିଷ ତୁମ ଚୋରମାନଙ୍କୁ ବେଶ୍ ପାଏ । ଏଇଥି ପାଇଁ ବୋଧହୁଏ ବେଶି କଳି କରୁଛ ନା ?"

ଚୋର ଦୁଇଟା କହିଲେ, "ହଜୁର, ଏ କଳିଟା ତୁଟିଗଲେ ଆଉ କଳି କରିବୁନାହିଁ ।"

ପା'ଲ କହିଲା, "ମୋର ଏ ଲୁହା ବାଡ଼ିକି ଦେଖୁଛଟି । ଏ ବାଡ଼ି ଆଗରେ ତୁମର କୌଣସି କୁହୁକ କାମ ଦେବନି । ଆଉ ଚୋରି ଯଦି କରିବ, ତେବେ ଏହି ବାଡ଼ି ତୁମକୁ ସାବାଡ଼ କରିଦେବ । ହଉ, କାହିଁ ସେ ଖଣ୍ଡାଟା ଆଣିଲ ଦେଖି ।"

ସେମାନେ ତା ହାତକୁ ଝଣ୍ଟାଟି ବଢ଼ାଇଦେଲେ । ପା'ଲ ଖଣ୍ଟାଟି ଧରି କହିଲା, "ତାହିଁ ଏଥିରେ ସେପରି ଧାର ନାହିଁ ତ । ଗୋଟିଏ ଅନ୍ଧାରି ପୁରୁଣା ଖଣ୍ଡା ନେଇଆସିଛନ୍ତି—କହୁଛନ୍ତି କଣ ନା ମାରମାର ଖଣ୍ଡା !" ଏତିକ କହିଦେଇ ସେ ଝଣ୍ଟାଟି ଧରି ଚଟ୍ କରି ନିଜ ମୁଣ୍ଡରେ ଟୋପିଟି ଲଗାଇପକାଇଲା । ସଙ୍ଗେ ସଙ୍ଗେ ସେ କେଉଁଆଡ଼େ ଅଦୃଶ୍ୟ ହୋଇଗଲା । ଚୋର ଦୁଇଟା ପାଟି କରି ପଚାରିଲେ, "ହଜୁର, ଦେଖିଲଟି ସେ ଟୋପି ଗୁଣ ? ସବୁ ଅଦୃଶ୍ୟ କରିଦେଲା । ଆମେ ପରା ଆପଣଙ୍କୁ ମୋଟେ ଦେଖିପାରୁନାହୁଁ ।"

କିନ୍ତୁ ପା'ଲ ଉଣ ଆଉ ସେମାନଙ୍କୁ ଦେଖା ଦିଅନ୍ତା ? ସେ ମନପବନ ଆସନକୁ ଆଦେଶ ଦେଇଦେଲା, "ତୁ ମୋତେ ଏଠାରୁ ଶୀଘ୍ର ନେଇ ଚାଲ ।" ଚୋର ଦୁଇଟା, "ଏଁ ! ଏଁ !! ଏଁ !!!" ବୋଲି ପାଟିକରୁଥାନ୍ତି, ପା'ଲ ତାର ମନପବନ ଆସନରେ ଅନେକ ଦୂର ଚାଲିଗଲା । ଅନେକ ଦୂର ଯିବା ପରେ ସେ ମନପବନ ଆସନକୁ କହିଲା, "ମୋତେ କପୋତକୁମାରୀର ବାପ ଘରକୁ ନେଇ ଚାଲ ।"

ମନପବନ ଆସନ ସଙ୍ଗେ ସଙ୍ଗେ ନିଜର ଦିଗ ବଦଳାଇ ଅନ୍ୟ ଦିଗକୁ ଚାଲିଲା । କିଛି ସମୟ ଭିତରେ ସେ ଆସନ ଯାଇ ଏକ ବିରାଟ ପଡ଼ିଆ ଭିତରେ ଓହ୍ଲାଇ ପଡ଼ିଲା । ତା'ର ଚାରିଆଡ଼େ ପର୍ବତ ଘେରି ରହିଥାଏ । ପଡ଼ିଆ ମଝିରେ ରହିଥାଏ ସାତଟି ସାତ ମହଲା କୋଠାଘର । ପା'ଲ ଜାଣିଗଲା ଯେ ଏଇଟା ହିଁ କପୋତକୁମାରୀର ବାପଘର । ସେ ଆସନରୁ ଉଠିପଡ଼ି ଆସନଟିକୁ ଗୁଡ଼ାଇ ଦେଇ କାଖ ତଳେ ଜାକିଧରିଲା ଏବଂ କୁହୁକ ଟୋପିଟି ପିନ୍ଧିପକାଇ ପୁଣିଥରେ ଅଦୃଶ୍ୟ ହୋଇଗଲା । ସାତଟା ସାତ ମହଲା କୋଠାରୁ କେଉଁଟାରେ କପୋତକୁମାରୀ ରହିଛି ସେକଥା ଜାଣିବା କଷ୍ଟ । ତେଣୁ ସେ ଅଦୃଶ୍ୟ ହୋଇ ସାତଟା ଯାକ କୋଠାଘରର ସବୁଗୁଡ଼ାକ କୋଠରି ଖୋଜିପକାଇଲା । କିନ୍ତୁ ଯେଉଁଠିକି ଗଲା ସେଠି ଖାଲି ମାଲ ମାଲ ଅସୁର ଓ ମାଲ ମାଲ ଚଢ଼େଇ ; କୌଣସିଠାରେ କପୋତକୁମାରୀର ଦେଖା ମିଳିଲାନାହିଁ । ଚାରିଆଡ଼ୁ ଖୋଜି ଖୋଜି ନିରାଶ ହୋଇ ଫେରି ଆସିବା ବେଳକୁ ଦେଖିଲା, ଗୋଟିଏ ବଡ଼ କୁକୁଡ଼ା ଘର ଭିତରେ ପଲ ପଲ ହୋଇ ବତକ, କୁକୁଡ଼ା ଚରୁଛନ୍ତି । କପୋତକୁମାରୀ ତାହା ଭିତରେ ମନ ଦୁଃଖରେ ମୁହଁପୋଛ ବସିଛି । ପା'ଲ କ ଆଉ ଡେରିକରେ ! ସେ ସଙ୍ଗେ ସଙ୍ଗେ କୁକୁଡ଼ା ଘର ଭିତରକୁ ପଶିଗଲା । ସେ ଭିତରେ ପଶି ଯେତେବେଳେ ତାର କୁହୁକ ଟୋପିଟି କାଢ଼ିଦେଲା, ସେତେବେଳେ ହଠାତ୍ ଗୋଟାଏ ନୂଆ ଲୋକ ଦେଖି କୁକୁଡ଼ା, ବତକଗୁଡ଼ାକ କ କା ହୋଇ ହୁରୁଡ଼ିଲେ । ପା'ଲ କପୋତକୁମାରୀ ପାଖକୁ ଯାଇ କହିଲା, "ଆଗୋ, ତୁମ ଛୁଆ ଦୁଇଟିକୁ ଛାଡ଼ିଦେଇ, ମତେ କିଛି ନ କହି ଏପରି ପଳାଇ ଆସିଲ ? ପୁଅ ଝିଅ ତୁମକୁ ମନେପକାଇ କହି କହି ହୋଇ କାନ୍ଦୁଛନ୍ତି । ଆସ ଘରକୁ ଫେରିଯିବା । ମୁଁ ତୁମକୁ ନେବାଲାଗି ଆସି ଖୋଜୁଛି । ତୁମେ କାହିଁକି ଏ କୁକୁଡ଼ା ପଲ ଭିତରେ ବସିଛ ଶୁଣେ ?"

ଏତେ ଦିନ ପରେ ସ୍ୱାମୀଙ୍କୁ ଦେଖିବାକୁ ପାଇ କପୋତକୁମାରୀ ବିକଳରେ କାନ୍ଦ-

ପକାଇଲା । କହିଲା, "ମୁଁ ମିନା ବାପାଙ୍କୁ ଦେଖିବା ଲାଗି ଏଠାକୁ ପଳାଇ ଆସିଲି; କିନ୍ତୁ ବାପା ମୋ ବାହାଘର କଥା ଶୁଣି ବହୁତ ରାଗିଲେ । ମୋତେ ଅନେକ ମାରିଲେ । ସେଥିପାଇଁ ମୋତେ ଏ କୁକୁଡ଼ାଘରେ ବନ୍ଦୀ କରି ଅନେକ ଦଣ୍ଡ ଦେଲେଣି । ମୋର ଏଠାରୁ ଚାଲିଯିବାକୁ ମନ; କିନ୍ତୁ ବାପା ମୋତେ ଜମା ଛାଡ଼ିବେ ନାହିଁ ।"

ଇମିତି କଥାବାର୍ତ୍ତା ଚାଲିଛି, ହଠାତ୍ କାହାର ପାଦ ଶବ୍ଦ ଶୁଭିଲା । ସେ ଦୁମ୍ ଦୁମ୍ ପାଦ ଶବ୍ଦରେ କମେ ଘରଟା କମ୍ପି ଉଠିଲା । ସେ ଶବ୍ଦ ଶୁଣି କପୋତକୁମାରୀ ପା'ଲକୁ କହିଲା, "ଆହେ ଲୁଚଯାଅ, ଲୁଚଯାଅ, ବାପା ଆସିଲେଣି । ତୁମକୁ ଦେଖିଲେ ମାର-ଗୋଡ଼ାଇବେ ।"

"ଭୟ କରନାହିଁ ।" କହି ପା'ଲ ତାର କୁହୁକ ଟୋପିଟି ଲଗାଇପକାଇଲା । ସେ ଅଦୃଶ୍ୟ ହୋଇ ଯାଇଛି କି ନାହିଁ କପୋତକୁମାରୀର ବାପା ଆସି ସେଠାରେ ପହଞ୍ଚିଗଲା । ଓଃ, କି ଭୀଷଣ ଅସୁରଟାଏ ହୋଇଥାଏ । ତା ମୁହଁରେ ଏପରି ଲମ୍ବ ଦାଢ଼ି ଝୁଲୁଥାଏ ଯେ ଦେଖିଲେ କେତେଟା ଗ୍ରେଟ ଡନ୍ଙ୍କେଇ ବସାକରିଥାନ୍ତି । ଆଖି ଦୁଇଟା ନିଆଁ ପରି ଦାଉଦାଉ ଜଳୁଥାଏ । କଥାଗୁଡ଼ାକ ମେଘ ଗର୍ଜନ ପରି ଶୁଭୁଥାଏ । ସେ ନାନା ଧମକ ଚମକ ଦେଇ କପୋତ କୁମାରୀକୁ ପଚାରିଲା, "ମୋତେ ନରଗନ୍ଧ କରୁଛି । ମୋ କୁକୁଡ଼ା ବତକ ଗୁଡ଼ାକ ହୁରୁଡ଼ି ଛନ୍ତି । ଏଠାରେ କିଏ ଲୁଚିଛି କହ ।"

କପୋତ କୁମାରୀ ଥରି ଥରି କହିଲା, "କାହିଁ ନାହିଁ ତ, ଏଠାରେ କେହି ଲୁଚି ନାହିଁ ତ ।"

"ମିଛ କଥା । କହ, ଏଠାରେ କିଏ ଲୁଚିଛି ।" କହି ସେ ଅସୁର ଅଧିକ ଜୋର୍‌ରେ ଗର୍ଜନକଲା । ସେ ସେହି କଥା ସେହି କଥା ବାରମ୍ବାର ପଚାରିବାରୁ କପୋତକୁମାରୀ ଆଉ ମିଛ ନ କହି ସତ କଥାଟି କହିଦେଲା । ଅସୁର ଯେତେବେଳେ ଶୁଣିଲା ଯେ କପୋତ କୁମାରୀର ସ୍ୱାମୀ ଆସି ସେ କୁକୁଡ଼ା ଘରେ ଲୁଚିଛି, ସେତେବେଳେ ସେ ଆଖି ତରାଟି ଦାନ୍ତ କାମୁଡ଼ି ଝିଅକୁ ମାରିବାକୁ ଦୌଡ଼ିଆସିଲା । ଏ ଘଟଣା ଦେଖି ପା'ଲ ତାର କୁହୁକ ଟୋପି ଖୋଲିପକାଇ ମାରମାର ଖଣ୍ଡାଧରି ଅସୁର ଆଗକୁ ଡେଇଁପଡ଼ିଲା । କହିଲା, ଦେଖ ହେ ଶଶୁର ମୁଁ କିଏ ସେ !—ମୁଁ ହେଉଛି ତୁମ ଝିଅ କପୋତକୁମାରୀର ସ୍ୱାମୀ ।"

ଅସୁର ନିଆଁ ବାଣ ହୋଇ ଗର୍ଜନ କଲା, "ଅରେ ପାପିଷ୍ଠ, ତୁ ପୁଣି ଆସି ମୋ ଘରେ ପଶିଲୁଣି ! ମୁଁ ତତେ ଆଜି କଞ୍ଚା ଖାଇବି !" ବହୁ କହୁ ସେ ପା'ଲ ଉପରକୁ ମାଡ଼ିଆସିଲା । କପୋତକୁମାରୀ ଭୟରେ ଆର୍ତ୍ତନାଦ କରିବାକୁ ଲାଗିଲା । କିନ୍ତୁ ପା'ଲ ନିର୍ଭୟରେ ଠିଆ-ହୋଇ ମାରମାର ଖଣ୍ଡାକୁ ଆଦେଶ ଦେଇ ଦେଲା, "ମୋ ଶତ୍ରୁକୁ ମୂଳପୋଛ କରିଦେ ।"

ଖଣ୍ଡାଟି ଶୂନ୍ୟେ ଶୂନ୍ୟେ ଉଡ଼ିଯାଇ ଆସିପିଛୁଳାକେ ଅସୁରର ବେକ ମୂଣ୍ଡରେ ବସିଗଲା । ସେଇ ଗୋଟିଏ ଚୋଟରେ ଏତେ ବଡ଼ ଅସୁରଟା ଦୁଇଖଣ୍ଡ ହୋଇଗଲା । ଅସୁର ବିନାଶକରି ପା'ଲ କପୋତକୁମାରୀ ସହିତ ନିଜ ଦେଶକୁ ଫେରିବାକୁ ବସିଛି, କପୋତ-

କୁମାରୀ କହିଲା, "ମୋ ବାପା, ତୁମର ସେ ଧରମବାପ ଅସୁରର ଆଖି ଦୁଇଟି ଉପାଡ଼ି ଆଣି ନିଜ ଘରେ ଲୁଚାଇ ରଖିଥିଲେ । ଚାଲ ସେ ଆଖି ଦୁଇଟି ନେଇ ତାଙ୍କୁ ଫେରାଇଦେବା ।"

ପା'ଲ ଏ କଥା ଶୁଣି ବଡ଼ ଖୁସି ହୋଇଗଲା । ତହୁଁ ସେ ଆଖି ଦୁଇଟି ନେଇ ସେ ଅନ୍ଧ ଅସୁରକୁ ଦେଇଦେଲେ । ଆଖି ଦୁଇଟି ଫେରପାଇ ଅସୁରର ଯେଉଁ ଆନନ୍ଦ ହେଲା ସେ କଥା ଆଉ କହିହେବନାହିଁ । ସେ ପାଲ୍'କୁ କହିଲା, "ବାପରେ, ତୁ ଆଜଠୁ ମୋର ଧରମପୁଅ । ତୋର ଯେତେ ସମ୍ପତ୍ତି ଇଚ୍ଛା ସେତେ ନେଇ ଖର୍ଚ୍ଚ କର । ଯେତେବେଳେ ଇଚ୍ଛା ସେତେବେଳେ ଏଠିକି ଆସିପାରିବୁ । ମୋ ଅନ୍ତେ ଏ ସବୁ ସମ୍ପତ୍ତି ତୋର ହେବ ।" ସେଠାରେ କିଛି ଦିନ ରହିବା ପରେ ପା'ଲ ଓ କପୋତକୁମାରୀ ମନପବନ ଆସନରେ ବସି ନିଜ ଘରକୁ ଫେରଆସିଲେ । ସେମାନଙ୍କର ପୁଅଝିଅ ମାଆ ବାପାଙ୍କୁ ଫେରପାଇ ଆନନ୍ଦରେ ଗୀତଗାଇ ନାଚିବାକୁ ଲାଗିଲେ ।

## କାଇବେଲୁ ଖଜୁର ଗୃଲଣ

ଜଣେ ଚଷା ବୁଢ଼ା ଥିଲା ଯେ ତା'ର ଗୋଟିଏ ବୋଲି ପୁଅ । ପିଲାଟି ଦିନରୁ ପୁଅଟିର ମାଆ ମରିଯାଇଥାଏ । ତେଣୁ ବୁଢ଼ା ବଡ଼ ଆଦର ଯତ୍ନରେ ତାକୁ ବଢ଼ାଇଥାଏ । ପୁଅଟି ବି ତା ବାପାକୁ ଖୁବ୍ ଭକ୍ତିକରେ । ଅଭାବ ଅନଟନ ଭିତରେ ବି ବାପା ପୁଅ ବଡ଼ ସନ୍ତୋଷରେ ଚଳୁଥାନ୍ତି । ଯେତେବେଳକୁ ପୁଅର ଆଠୁଣ ମୁଣ୍ଡକୁ ହାତ ପାଇ ନ ଥାଏ, ଏ ଅବସ୍ଥାରେ ବୁଢ଼ା ଦେହଦୁଃଖରେ ପଡ଼ିଲା । କେତେ ଔଷଧ ମନ୍ତ୍ରୌଷଧି କରାଗଲା, ପୁଅଟି କେତେ ଦେବ ଦେବତାଙ୍କୁ ଡାକିଲା, ବହୁତ ସେବାଶୁଶ୍ରୂଷା କଲା, କିନ୍ତୁ କୌଣସିଥିରେ କିଛି ଫଳ ହେଲା ନାହିଁ । ଶେଷରେ ମରଣକାଳ ଉପସ୍ଥିତ ହେଲା ଜାଣି ବୁଢ଼ା ପୁଅକୁ ପାଖକୁ ଡାକି କହିଲା, "ବାପରେ, ମୁଁ ତତେ ଜନ୍ମ ଦେଇଥିଲି; କିନ୍ତୁ ତୋ ପାଇଁ କିଛି ସମ୍ପତ୍ତିବାଡ଼ି ରଖିପାରିନାହିଁ । ସେ ଯାହାହେଉ, ତୋ ଉପରେ ମୁଁ ଖୁବ୍ ସନ୍ତୁଷ୍ଟ । ମୁଁ ଆଖି ବୁଜି ଦେଉଛି ସତ, ହେଲେ ତତେ ଗୋଟିଏ ଆଶୀର୍ବାଦ ଦେଇଯାଉଛି ଯେ ତୁ ମାଟିବାଲି ଧରି ଦେଲେ ବି ତାହା ସୁନା ପାଲଟିଯିବ । ତେଣୁ ନିକମା ହୋଇନବସି କିଛି ନା କିଛି କାମରେ ହାତ ଦେବୁ ।"

ବୁଢ଼ା ଆଖି ବୁଜିବା ପରେ ପୁଅ ବାପାଙ୍କ କଥା ମନେପକାଇ ବହୁତ କାନ୍ଦିଲା । ବାପାଙ୍କ ଉପଦେଶ ମାନି କିଛି ଗୋଟିଏ କାମରେ ହାତ ଦେବ ବୋଲି ଖୋଜି ଖୋଜି ତାକୁ ଗୋଟିଏ ବୁଦ୍ଧି ଦିଶିଗଲା । ପୂର୍ବପୁରୁଷରୁ ତାର ଖଣ୍ଡିଏ ପାହାଡ଼ିଆ ଜମି ଥିଲା । ସେହି ଖଣ୍ଡିକରେ ପରିଶ୍ରମ କରି ଅଙ୍ଗୁର ବଗିଚାଟିଏ ଗଢ଼ିଲା । ମାତ୍ର କେତେଟା ଭିତରେ ତା

ଅଙ୍ଗୁର ଗଛଗୁଡ଼ାକ ଏପରି ବଢ଼ିଲା ଯେ ପାଖଆଖର ଚାଷୀମାନେ ସେ ଗଛ ଦେଖି ଈର୍ଷା କଲେ । ଲୋକେ ତାଙ୍କର ଈର୍ଷା କରୁଥାନ୍ତି, ଏଣେ ସେ ଗଛଗୁଡ଼ାକରେ ଏପରି ଫଳ ଧରିଲା ଯେ, ଲୋକେ ସେ ଫଳ ଦେଖି ଧନ୍ୟ ଧନ୍ୟ କହିବାକୁ ଲାଗିଲେ । ସେ ଅଞ୍ଚଳର ଲୋକେ ପୂର୍ବରୁ ଏତେ ବଡ଼ ବଡ଼ ଅଙ୍ଗୁର ପେନ୍ଥା ଦେଖି ନଥିଲେ । ଫଳଗୁଡ଼ାକ ପୁଣି କି ମିଠା ! କି ବାସନା ! ! ଅଙ୍ଗୁର ବିକି ସେ ବର୍ଷ ତାର ଖର୍ଚ୍ଚ ଲାଭ ହେଲା । ଲାଭ ପଇସାରେ ସେ ଆଉ ଖଣ୍ଡିଏ ଜମି କିଣିପକାଇଲା । ସେଥିରେ ବି ସେ ଅଙ୍ଗୁର ଚାଷ କଲା । ଅଙ୍ଗୁର ଚାଷ ଲାଭରେ ଏଥର ସେ ଖଣ୍ଡିଏ ଅଲିଭ ବଗିଚା କିଣିପକାଇଲା । ତା ହାତ ବାଜୁବାଜୁ ସେ ବର୍ଷ ସେ ବଗିଚାରେ ଏପରି ଅଲିଭ ଫଳିଲା ଯେ, ଯେ ଦେଖିଲା, ସେ ତାର ପ୍ରଶଂସା କରି ବସିଲା । ଅଲିଭ ମଞ୍ଜିରୁ ବଢ଼ିଆ ତେଲ ବାହାରେ । ଏତେ ଅଲିଭ ଫଳ ଘଣାକୁ କେତେ ବୋହିନେବ ଭାବି ସେ ନିଜ ବଗିଚାରେ ଗୋଟିଏ ତେଲ ଘଣା ବସାଇଦେଲା । ତା ଘଣାର ତେଲ ଅନ୍ୟ ସମସ୍ତଙ୍କ ତେଲକୁ ଟପିଗଲା । ଚାଷବାସରେ ଏପରି ପ୍ରଚୁର ଲାଭ କରି ସେ ଏଥର ମାଛ ବ୍ୟବସାୟରେ ବି ହାତ ଦେବାକୁ ମନକଲା । ଗୋଟିଏ ଗୋଟିଏ କରି ବଣି ବାରଖଣ୍ଡି ଡଙ୍ଗା କିଣି କେତେଜଣ କେଉଟଙ୍କୁ ମାଛ ଧରିବା କାମରେ ନିଯୁକ୍ତ କରି-ଦେଲା । ସେମାନେ ଡଙ୍ଗା ଓ ଜାଲ ନେଇ ପ୍ରତିଦିନ ପାଖ ସମୁଦ୍ରରୁ ମାଛ ଧରି ଆଣନ୍ତି । ଚଷାପୁଅ କୂଳରେ ବସି ମାଛ ନିଲାମ କରେ । ମାଛ ଶୁଖୁଆ ବ୍ୟବସାୟରେ ପୁଣି ଲୋକେ ଏପରି ଲାଭକରନ୍ତି, ଏକଥା କେହି ଦେଖିନଥିଲେ । ପାଗ ଯାହାହେଉ ପଛେ ତା ଡଙ୍ଗା କେବେ ଖାଲି ଫେରେନାହିଁ । ଫଳରେ ମାଛ କାରବାରରେ ସେ ଅନ୍ୟ ସମସ୍ତଙ୍କୁ ଟପିଗଲା । ଏହିପରି ଗୋଟିଏ ପରେ ଗୋଟିଏ ବ୍ୟବସାୟରେ ହାତ ଦେଇ ସେ ଦେଖିଲା ଯେ ସେ ଯେଉଁଥିରେ ହାତ ଦେଉଛି ସତରେ ସେଥିରେ ସୁନା ଫଳୁଛି । ଏପରି ବ୍ୟବସାୟ କରି କରି ବର୍ଷ କେତୋଟା ଭିତରେ ସେଦିନର ବାପମାଆଛେଉଣ୍ଡ ଗରିବ ଚଷାଟି ସେ ରାଜ୍ୟର ଜଣେ ନାମଜାଦା ଧନୀ ବେପାରୀରୂପେ ପରିଚିତ ହେବାକୁ ଲାଗିଲା । ତାକୁ ଖୋଜି ତାକୁ ଗୋଟିଏ ଧନୀ ଶ୍ୱଶୁର ବି ମିଳିଗଲା । ରାଜକୁମାରୀ ପରି ସୁନ୍ଦର ଝିଅଟିଏ ବିବାହ କରି ଆରାମରେ ଖାଇପିଇ ହେ ବାର ଅସୂଦରେ କୋଠିବାନା ଉଡ଼ାଇ ଦିନ କାଟିବାକୁ ଲାଗିଲା । କିନ୍ତୁ ଏତେ ଧନ ସମ୍ପଦ ଭିତରେ ବି ସେ ବାପାଙ୍କ ପାଦୋର ପାଶିଲା ନାହିଁ । ତା ଉପରେ ତା ବାପାଙ୍କର ଆଶୀର୍ବାଦ ବି କମ୍ ହେଲା ନାହିଁ । କେତେ କହିଲେ ତାପରି ଭାଗ୍ୟବାନ୍ ଆଉ କେଉଁଠି ନଥିବ ।

କିନ୍ତୁ ଯେତେ ଭାଗ୍ୟବାନ୍ ହେଲେ କଣ ହେବ, ତା ମନରେ ଗୋଟିଏ ଭୟ ରହିଥାଏ । ଦିନେ ସେ ତାର ଜଣେ ଆପଣାର ବନ୍ଧୁଙ୍କୁ ଡାକି କହିଲା, "ଭାଇ, ତୁମେ ତ ଦେଖୁଥିବ ମୋର ବ୍ୟବସାୟରେ ଲାଭ ଛଡ଼ା କ୍ଷତି ହେଉ ନାହିଁ । ମଣିଷ ହାତକୁ ଏପରି ସମ୍ପଦ ମାଡ଼ି ଆସିବା କିଛି ଭଲ କଥା ନୁହେଁ । ଯେତେ ଯାହା କଲେ ବି ତ ସମ୍ପଦ କମୁନାହିଁ — ଦିନକୁ ଦିନ ବଢ଼ୁଛି । ଯଦି କେବେ ବିଧାତା ମୋତେ ଈର୍ଷା କରିବ, ତେବେ ଅବସ୍ଥା ବାରଣ୍ଡା

ଢ'କଡ଼ା ହୋଇଯିବ । କୌଣସି ପ୍ରକାରେ ଯଦି ବ୍ୟବସାୟରେ ଟିକିଏ ଲାଭ ମିଳନ୍ତା ଭବିଷ୍ୟତରେ ବି ମଙ୍ଗଳ ହୁଅନ୍ତା । କଣ କଲେ ଲାଭ ହେବ କହିଲ ?"

ବନ୍ଧୁ ଜଣକ ଅନେକ ଭାବି ଚିନ୍ତି ପଚାରିଲେ, " ଆଚ୍ଛା, ଆମ ଏ ରାଜ୍ୟରେ ତ ଖଜୁରି ଫଳୁ ନାହିଁ । ଖଜୁରି କେଉଁଠୁ ଆମଦାନୀ ହେଉଛି ?"

ଭାଗ୍ୟବାନ୍ କହିଲା, "ତୁମେ ଏତିକି ଜାଣନା । ଖଜୁରି ପରା ଆରବ ଦେଶର ଫଳ । ଆମ ଏଠିକି ଯେତେ ଖଜୁରି ଆସୁଛି ସବୁ କାଇରୋରୁ ଆସୁଛି । ସେ ଦେଶ ଖଜୁରି ପାଇଁ ପ୍ରସିଦ୍ଧ ।"

ବନ୍ଧୁ ଜଣକ କହିଲେ, "ତୁମେ ଯଦି ଲାଭ ଚାହୁଁଛ, ତେବେ ଆମ ଏ ଅଞ୍ଚଳର ବେପାରୀଙ୍କ ପାଖରେ ଯେତେ ଖଜୁରି ମିଳୁଛି, ତୁମେ ସେ ସବୁ କିଣି ପକାଇ ବିକିବା ଲାଗି କାଇରୋ ନେଇଯାଅ ।"

ଭାଗ୍ୟବାନ୍ କହିଲା, "ଠିକ୍, ଠିକ୍ କହିଛ ବନ୍ଧୁ ! ଏଠାରୁ ଖଜୁରି କିଣି ସେ ଦେଶକୁ ଚାଲାଣ କଲେ ନିଶ୍ଚୟ ଗୁଡ଼ାଏ ଖର୍ଚ୍ଚ ଲାଗିବ; ପୁଣି ସେ ଦେଶରେ ଏ ଖଜୁରି ମୋଟେ କଟିବ ନାହିଁ । ସତରେ ଖୁବ୍ ଲାଭ ହେବ । ମୁଁ ତା'ହେଲେ ସେଇଆ କରିବ ।" ତା'-ପରେ ସେ ଲୋକ ଲଗାଇ ସେ ଅଞ୍ଚଳର ବେପାରୀଙ୍କଠାରୁ ସବୁ ତକ ଖଜୁରି କିଣି ପକାଇଲା । ସେ ସବୁ ବସ୍ତାରେ ପୂରାଇ ଦଳେ ଓଟଙ୍କ ଉପରେ ଲଦି ବିକିବା ଲାଗି କାଇରୋ ନେଇ ଚାଲିଲା । ଓଟଦଳ ନେଇ ଅନେକ ଦିନ ଚାଲିବା ପରେ ସେ ମିଶର ଦେଶର ମରୁଭୂମି ପାର ହେବାକୁ ବସିଛି, ଦେଖିଲା ସେପଟୁ କାଇରୋ ଆଡୁ ଦଳ ଦଳ ହୋଇ ସୈନ୍ୟ ଚାଲି ଆସୁଛନ୍ତି । ସୈନ୍ୟ ଗହଣରେ ଖୋଦ ମିଶର ସମ୍ରାଟ ବି ଆସୁଛନ୍ତି । କିନ୍ତୁ ଆଶ୍ଚର୍ଯ୍ୟ କଥା ଯେ ସେ ସୈନ୍ୟମାନେ କୌଣସି ଅସ୍ତ୍ରଶସ୍ତ୍ର ନଧରି, ଧରିଛନ୍ତି ଗୋଟିଏ ଗୋଟିଏ ଚାଲୁଣି । ଭାଗ୍ୟବାନ୍ ଏ ଚାଲୁଣି ପଟୁଆର ଦେଖି ଆଶ୍ଚର୍ଯ୍ୟ ହୋଇଗଲା । ସୈନ୍ୟମାନେ ଟିକିଏ ପାଖେଇ ଆସିବାରୁ ସେ ମିଶର ସମ୍ରାଟଙ୍କ ପାଖକୁ ଯାଇ ପଚାରିଲା, 'ମହିମା, ଏ ତ ବଡ଼ ଆଶ୍ଚର୍ଯ୍ୟ କଥା ! ଏତେ ସୈନ୍ୟସାମନ୍ତ ଧରି ଏପରି ଚାଲୁଣି ପଟୁଆରରେ ମହିମା କେଉଁଠିକି ବିଜେ କରୁଛନ୍ତି ?"

ମିଶରର ସମ୍ରାଟ କହିଲେ, "ଆରେ, ସେ କଥା ଆଉ କ'ଣ କହିବି ! ମୋ ବାହାଘର ମୁଦିଟା କାଲି ଏହି ବାଲିରେ କେଉଁଠି ପଡ଼ିଗଲା । ମୋର ସମ୍ପତ୍ତି ଭିତରେ ମୁଁ ସେ ମୁଦିଟିକୁ ଖୁବ୍ ଭଲପାଏ । ମୁଦିଟି ହଜିଯିବା ବେଳୁ ମୋ ମନରେ ଆଉ ଶାନ୍ତି ନାହିଁ । ତେଣୁ ସୈନ୍ୟମାନଙ୍କୁ ଆଦେଶ ଦେଇଛି ସେମାନେ ଏ ବାଲିଗୁଡ଼ାକୁ ଚାଲୁଣିରେ ଚାଲିବେ । ସବୁ ଗୁଡ଼ାକ ବାଲି ଚାଲେଇ ଦେଲେ ମୁଦିଟା ମିଳିଯିବ । ମୁଦିଟି ନ ମିଳିବା ପର୍ଯ୍ୟନ୍ତ ମୁଁ କଣ ଆରାମରେ ବସିପାରିବି ? ଆଚ୍ଛା ତୁ କିଏ ସେ ? ତୁ ତ ଆମ ଦେଶର ଲୋକ ନୋହୁ ।"

ଭାଗ୍ୟବାନ୍ କହିଲା, "ହଜୁର୍ ମୁଁ ଜଣେ ଖଜୁରି ବେପାରୀ ।"

"ଖଜୁରି ବେପାରୀ !"—ଆଉ ଏ ଓଟଙ୍କ ଉପରେ କି ମାଲ ବୋହାଇ ଆଣିଛୁ ?"

"କାଇରୋରେ ବିକିବା ଲାଗି ଆମ ଦେଶରୁ ଖଜୁରି କିଣି ଆଣିଛି ।"

ଏକଥା ଶୁଣି ମିଶର ସମ୍ରାଟ ଓ ତାଙ୍କ ସେନାପତିମାନେ ହୋ ହୋ ହୋଇ ହସିବାକୁ ଲାଗିଲେ । ସେମାନେ ହସୁଛନ୍ତି ଦେଖି ସୈନ୍ୟମାନେ ବି ହସିବାକୁ ଲାଗିଲେ । ହସ ରୋଳରେ ସେ ବିରାଟ ମରୁଭୂମି କମ୍ପିବାକୁ ଲାଗିଲା । ସମ୍ରାଟ ହସି ହସି ବେଦମ୍ ହୋଇ ଯାଉଛନ୍ତି ଦେଖି ଭାଗ୍ୟବାନ୍ ପଚାରିଲା, "ମଣିମା, ଏପରି ହସୁଛନ୍ତି କାହିଁକି ?"

ସମ୍ରାଟ କହିଲେ, "ହଇରେ, ହସିବି ନାହିଁ ? ତତେ ମାଲ ମିଳିଲା ନାହିଁ ଯେ ତୁ ବେପାର କରିବା ଲାଗି ଖଜୁର ନେଇ କାଇରୋ ଆସିଛୁ ? ଦେଖୁଛୁ, ମୋ ଦେଶରେ ଯେଣେ ଚାହିଁବୁ ତେଣେ ଖଜୁର ଗଛ । ଯେଉଁ ଗଛକୁ ଚାହଁ ସେ ଗଛରେ ଖଜୁର ପାଚି ଝୁଲୁଚି । ଏଠାରେ ତୋ ଖଜୁର କିଣିବ କିଏ ? —ଏ ବେପାରରେ ତୁ ବଡ଼ ଦିବାଳିଆ ହୋଇଯିବୁ ।"

ଭାଗ୍ୟବାନ୍ କହିଲା, "ମୁଁ ତ ସେଇଆ ଚାହୁଁଛି ହଜୁର । ଯେଉଁ ବେପାରରେ ହାତ ଦେଉଛି ସେ ବେପାରରେ ଲାଭ ବିନା କ୍ଷତି ହେଉନି । ଥରେଅଧେ କ୍ଷତି ହୋଇଯାଉ ବୋଲି ମୁଁ ଏ ଖଜୁର ବେପାର କରିବାକୁ ଆସିଛି । କିନ୍ତୁ ଏ ବ୍ୟବସାୟରେ ବି ଲାଭ ହୋଇଯିବ ବୋଲି ଭୟ ଲାଗୁଛି ।"

ସମ୍ରାଟ ପୁଣି ହସି ହସି କହିଲେ, "ତା' ହେଲେ ବାଲି ମାଟି ଆଣି ବିକୁ ନାହୁଁ ? ବୋକାରେ, ବୋକା—କହିଲୁ, ସବୁ ବ୍ୟବସାୟରେ ଲାଭହୋଇଯାଉଛି ।"

ଭାଗ୍ୟବାନ୍ କହିଲା, "ସତ କହୁଛ ମଣିମା, ମୋ ବାପା ମଲାବେଳେ କହିଯାଇଛନ୍ତି ଯେ, ମୁଁ ବାଲିମାଟି ଧରିଦେଲେ ବି ତାହା ସୁନା ହୋଇଯିବ । ଆପଣଙ୍କ ଦେଶରେ ଏ ଯେଉଁ ବାଲି ଅଛି ନା, ମୁଁ ଏଇକୁ ନେଇ ବିକିଲେ ବି ମୋର କ୍ଷତି ନ ହୋଇ ଲାଭ ହେବ ।" ଏହା କହୁ କହୁ ସେ ମୁଠାଏ ବାଲି ହାତରେ ଉଠାଇନେଲା । ତାପରେ କଣ ହେଲା ଜାଣିଛ ? ଆଙ୍ଗୁଠି ଫାଙ୍କବାଟେ ବାଲିଗୁଡ଼ାକ ଗଳିଗଲା ପରେ ଦେଖାଗଲା ଯେ ତା ହାତରେ ସମ୍ରାଟଙ୍କର ସେହି ହଜିଲା ମୁଦିଟି ରହିଯାଇଛି । ମୁଦିଟି ଦେଖି ଦେଉଦେଉ ସମ୍ରାଟଙ୍କର ଛାତି ଆନନ୍ଦରେ ଦ୍ୱିଗୁଣେ ମୋଟ ହୋଇଗଲା । ସେ ଭାଗ୍ୟବାନକୁ କୁଣ୍ଢାଇପକାଇ କହିଲେ, "ସତରେ ତୋ ହାତ ସୁନାହାତ । ମୁଁ ତୋ ପରି ଭାଗ୍ୟବାନ୍ ଦେଖିନଥିଲି । ଆସ, ଆସ, ଆମ ନଅରକୁ ଯିବା । ମୁଁ ତୋର ସବୁ ଖଜୁରି ଚଢ଼ାଦାମ୍‌ରେ କିଣିନେଇ ସୈନ୍ୟମାନଙ୍କୁ ଖାଇବାକୁ ଦେବି ।"

ସମ୍ରାଟ ତାକୁ ନଅରକୁ ଡାକିନେଲେ । ନଅରରେ ତାକୁ ଅନେକ ଆଦର ଅଭ୍ୟର୍ଥନା ମିଳିଲା । ଶେଷରେ ତାର ସବୁ ଓଟ ଉପରେ ନାନା ଉପହାର ସାମଗ୍ରୀ ଲଦି ଦେଇ ସମ୍ରାଟ ତା ହାତରେ ତା ଖଜୁରର ଦାମ୍ ଧରାଇଦେଲେ । କ୍ଷତି ସହିବା ଲାଗି ଯାଇ ଭାଗ୍ୟବାନ୍ ଲାଭ ନେଇ ଫେରିଆସିଲା । ବାପାମାଆଙ୍କୁ ଭକ୍ତି କଲେ ମଣିଷକୁ ଏହିଭଳି ଫଳ ମିଳେ, ବୁଝିଲ ?

---

# ସୁନାକୋଇଲି

ଜଣେ ରାଜା ଥାଆନ୍ତି ଯେ ତାଙ୍କର ତିନି ପୁଅ । ପୁଅମାନେ ହାତରେ ଟଙ୍କା ପଇସା ପାଇଲେ କିପରି ଖର୍ଚ୍ଚ କରିବେ ତାହା ଜାଣିବା ଲାଗି ରାଜା ତିନି ପୁଅଙ୍କୁ ତିନି ଥଳି ସୁନା ମୋହର ଦେଇଦେଲେ । ବାପାଙ୍କ ଉଦ୍ଦେଶ୍ୟ ଜାଣିପାରି ପୁଅମାନେ ନିଜ ଟଙ୍କା ସୁନା ଲଗାଇ ଗୋଟିଏ ବଡ଼ ଗୀର୍ଜାଘର ତିଆରି କରିବାକୁ ଆରମ୍ଭକଲେ । ନାନା ଦେଶରୁ ମିସ୍ତ୍ରି କାରିଗର ଡକାଇ ଗୀର୍ଜା ତୋଳା ଚାଲିଲା । ବଡ଼ ଦୁଇଭାଇ ଏତେ ଗୁଡ଼ାଏ ଧନ ଖର୍ଚ୍ଚ କରିବାକୁ ରାଜି ହେଉନଥିଲେ, କିନ୍ତୁ ସାନଭାଇର ଏପରି କାମରେ ଭାରି ଆଗ୍ରହ । ସେ ଯେତେ ସୁନ୍ଦର କରାଯାଇପାରେ ସେତେ ସୁନ୍ଦର କରି ଗୀର୍ଜାଟିକୁ ସଜାଇବାରେ ଲାଗିଗଲା । ଜାତିଜାତିକା ରଙ୍ଗିନ୍ କାଚ ଲଗାଇ, ଜାତିଜାତିକା ତୋରଣମାନ ଗଢ଼ାଇ ସେ ଏପରି ସୁନ୍ଦର କରି ଗୀର୍ଜାଟି ତିଆରିକରିଦେଲା ଯେ, ଯେ ଦେଖିଲା ସେ କହିଲା ସେ ରାଜ୍ୟରେ ଆଉ ଏପରି ସୁନ୍ଦର ଗୀର୍ଜା ନାହିଁ । ଏ ନୂଆ ଗୀର୍ଜାଘର କଥା ଚାରିଆଡ଼େ ପ୍ରଚାର ହୋଇ-ଯିବା ସଙ୍ଗେ ସଙ୍ଗେ ବିଭିନ୍ନ ସ୍ଥାନରୁ ବିଭିନ୍ନ ଲୋକ ଆସି ଗୀର୍ଜା ଦେଖିବାକୁ ଲାଗିଲେ । ଥରେ ଏ ସବୁ ଦେଖଣାହାରିଙ୍କ ସାଙ୍ଗରେ ଜଣେ ବୁଢ଼ା ଗୀର୍ଜା ଦେଖିବାକୁ ଆସିଥାନ୍ତି । ସେ ଚାରିଆଡ଼ ବୁଲି ଦେଖିସାରିବା ପରେ କହିଲେ, "ସତରେ ଏପରି ସୁନ୍ଦର ଗୀର୍ଜା ଆଉ କେଉଁଠି ନାହିଁ; କିନ୍ତୁ ଏପରି ଗୀର୍ଜାରେ ଯଦି ସୁନା କୋଇଲିଟିଏ ଥାଆନ୍ତା ନା, ତେବେ ତାର ମଧୁର ସଙ୍ଗୀତରେ ଗୀର୍ଜାଘର ପୂରିଉଠନ୍ତା । ସେତେବେଳେ ଏ ସ୍ଥାନର ମର୍ଯ୍ୟାଦା ଆହୁରି ବଢ଼ିଯାଆନ୍ତା ।"

ରାଜକୁମାରମାନେ ଏକଥା ଶୁଣି କହିଲେ, "ଆମେ ତାହାହେଲେ ଏଠାକୁ ଗୋଟିଏ ସୁନା କୋଇଲି ନେଇଆସିବା । କିନ୍ତୁ ସୁନା କୋଇଲି ମିଳିବ କେଉଁଠୁ ?"

ବୁଢ଼ା କହିଲେ, "ସେ ତ ସହଜରେ ମିଳିବା ଚିଡ଼େଇ ନୁହେ । ତେବେ କଥା ହେଉଛି କରିପାରିଲେ ସବୁ ହେବ, ଖୋଜିପାରିଲେ ସବୁ ମିଳିବ ।"

ରାଜକୁମାରମାନେ କହିଲେ, "ଆମେ କଣ ଖୋଜି ପାରିବା ନାହିଁ ? ନିଶ୍ଚୟ ପାରିବା । ଚାଲ, କାଲି ସକାଳୁ ସକାଳୁ ସୁନା କୋଇଲି ଖୋଜିବାକୁ ବାହାରିପଡ଼ିବା ।" ସତକୁ ସତ ତା ପରଦିନ ସକାଳୁ ତିନି ଭାଇ ସଜବାଜ ହୋଇ ସୁନା କୋଇଲି ଖୋଜିବା ଲାଗି ବାହାରିପଡ଼ିଲେ । ଖୋଜି ଖୋଜି ଯାଉ ଯାଉ ତିନି ଭାଇ ଅନେକ ଦୂର ଚାଲିଗଲେ । ଦିନ ପରେ ଦିନ ବିତି ଚାଲିଲା । ବାଟରେ ସବୁ ଗାଆଁ ଗଣ୍ଡା, ସବୁ ସହର ବଜାର ଓ ସବୁ ବଣ ଜଙ୍ଗଲ ଖୋଜି ଖୋଜି ଚାଲିଥାନ୍ତି; କିନ୍ତୁ କୌଣସି ସ୍ଥାନରେ ସୁନା କୋଇଲି ମିଳିଲା ନାହିଁ । ତଥାପି ସେମାନେ ନିରାଶ ନ ହୋଇ ଆଗକୁ ଚାଲିଲେ । ଏପରି ଚାଲୁ ଚାଲୁ ତିନିଭାଇ ଆସି ଦିନେ ଗୋଟିଏ ତିନିମୁହାଣୀ ଛକରେ ପହଞ୍ଚିଗଲେ । ସେଠାରୁ ତିନି ଦିଗକୁ ସଡ଼କ

ପଡ଼ୁଥାଏ । କିନ୍ତୁ ସେଥିରୁ ଗୋଟିଏ ସଡ଼କ ଧାରରେ ଲେଖାଥାଏ 'ଅଣ ବାହୁଡ଼ା'—ମାନେ ସେ ସଡ଼କରେ ଗଲେ ମଣିଷ ଆଉ ବାହୁଡ଼ି ଆସିବା ସହଜ ନୁହେଁ । ସେ ଲେଖା ଦେଖି ଦେଖି ବଡ଼ ଦୁଇଭାଇ କହିଲେ ଯେ ସେମାନେ ସେ ବାଟରେ ମୋଟେ ଯିବେ ନାହିଁ । ସେମାନେ ଅନ୍ୟ ଦୁଇଟି ସଡ଼କରେ ସୁନା କୋଇଲି ଖୋଜିବାକୁ ବାହାରି ପଡ଼ିଲେ । ସାନ ଭାଇ କହିଲା, "ସଡ଼କଟାରେ ଏପରି ଲେଖାହୋଇଛି ବୋଲି ଆମେ ଯଦି ଏ ଦିଗରେ ଯିବା ନାହିଁ ତେବେ ଏହି ଦିଗରେ ସେ ଚଢ଼େଇ ଥିଲେ ବି ଆମେ ଆଉ ତାକୁ ପାଇପାରିବା ନାହିଁ । ତେଣୁ ଯାହା ହେବାର ହେଉ, ମୁଁ ଏହି ଅଣବାହୁଡ଼ା ବାଟରେ ହିଁ ଯିବି ।"

ସାନଭାଇଟି ଚତୁର ଯେପରି ସାହସୀ ସେପରି । ଅଣବାହୁଡ଼ା ସଡ଼କରେ ଯାଉଯାଉ ସେ ହାଲିଆ ହୋଇଯାଇ ଗୋଟିଏ ଗଛ ଛାଇରେ ବସିପଡ଼ିଲା । ସେତେବେଳକୁ ବେଳ ଦି'ପହର ହୋଇଯାଇଥାଏ । ଗଛ ଛାଇରେ ବସି ସେ ନିଜପାଇଁ କିଛି ଖାଦ୍ୟ ରାନ୍ଧୁଛି, ଏ ସମୟରେ ଦେଖିଲା ସେହି ସଡ଼କ ଦେଇ ଜଣେ ବୁଢ଼ା ଯାଉଛି । ବୁଢ଼ାକୁ ଦେଖି ସେ ଡାକପକାଇଲା, "ହୋ ମଉସା, ଏ ଖରାଟାରେ କୁଆଡ଼େ ଏପରି ତରତର ହୋଇ ଚାଲିଛ ? ଏଠାକୁ ଆସ, ଟିକିଏ ଛାଇରେ ବସି ହାଲିଆମାରି ଯିବ ।"

ରଜାପୁଅର ଡାକ ଶୁଣି ବୁଢ଼ା ଆସି ଗଛ ଛାଇରେ ବସି ପଡ଼ୁ ପଡ଼ୁ କହିଲା, "ବାପ, ନ ଚାଲିଲେ ବାଟ କମିବ ସରିବ କହିଲୁ ?" ରଜାପୁଅ କହିଲା, "ବୁଢ଼ାଲୋକ; ଖରାଟା ଖୁବ୍ ଟାଣ ହୋଇଛି; ତେଣେ ଖିଆପିଆ ବେଳ ବି ହେଲାଣି, ଭୋକହେଉଥିବ । ବସ, ଏଠି ଦୁଇଟି ଖାଇପିଇ ପୁଣି ବାଟ ଚାଲିବା ।"

ତା ଆଗ୍ରହ ଦେଖି ବୁଢ଼ା ସେଇଠି ବସି ଦୁଇପଟ ରୁଟି ଖାଇଲା । ଖିଆପିଆ ଶେଷ ହେବାପରେ ବୁଢ଼ା ରଜାପୁଅକୁ ପଚାରିଲା, "ତୁମେ ଏ ବାଟରେ କେଉଁଠିକି ଯାଉଛ ?" ରଜାପୁଅ କହିଲା, "ଯାଉଛି ସୁନା କୋଇଲି ଚଢ଼େଇ ଖୋଜିବାକୁ । ଏ ପଟେ ସେ ଚଢ଼େଇ ମିଳିବ କି ?"

ବୁଢ଼ା କହିଲା, "ଏ ତ ବଡ଼ ବିଷମ ବାଟ; ଏ ସଡ଼କ ଶେଷରେ ଚାଳିଶିଭାଇଆ ଅସୁରଙ୍କ ଘର ପଡ଼ିବ । ସେହିମାନଙ୍କ ଘରେ ସୁନା କୋଇଲି ଚଢ଼େଇ ଅଛି । କିନ୍ତୁ କଥା ହେଉଛି, ସେ ଘରେ ଥରେ ପଶିଲେ, ମଣିଷ ବାହାରି ଆସି ପାରିବ ନାହିଁ ।"

"ଆସି ପାରିବ ନାହିଁ ?? ତା'ହେଲେ ଉପାୟ ?"

"ହଁ ଗୋଟିଏ ଉପାୟ ଅଛି—ଚେଷ୍ଟା କର । ସେ ଚାଳିଶି ଭାଇଙ୍କ କୋଠୀ ଆଗରେ ଦେଖିବ ଗୋଟିଏ ଦାନ୍ତୁଆ ଅସୁରୁଣୀ ବସି ମୁଣ୍ଡବାଳ ଶୁଖାଉଛି । ସେ ହେଉଛି ଚାଳିଶି ଭାଇଙ୍କ ମାଆ । ତୁମେ ଭୟ ନ କରି ସିଧା ତା ପାଖକୁ ଚାଲିଯାଇ କହିବ, 'ମାଆ ଲୋ ମାଆ, ମୋତେ ତୋ ଚାଳିଶି ପୁଅଙ୍କ ହାତରୁ ରକ୍ଷାକର ।' ସେ ବୁଢ଼ୀ ଯଦି ତୁମକୁ ରକ୍ଷା କରେ, ତେବେ ତୁମେ ସୁନାକୋଇଲି ନେଇ ଫେରିପାରିବ ।"

ହାଲିଆମାରିବା ପରେ ବୁଢ଼ା ନିଜ ବାଟରେ ଯିବାକୁ ବାହାରିଲା । ରଜାପୁଅ ବି ବୁଢ଼ାକୁ

ବହୁତ ଧନ୍ୟବାଦ ଦେଇ ନିଜ ବାଟରେ ଆଗେଇ ଚାଲିଲା । ଅନେକ ବାଟ ଯିବା ପରେ ଦୂରରୁ ଚାଳିଶି ଭାଇଅଙ୍କ କୋଠି ଦେଖାଗଲା । ସେ ଗୋଟାଏ ବିରାଟ କୋଠୀ । ଚାଳିଶି ହାତ ଉଚ୍ଚର ସେ କୋଠୀରେ ଚାଳିଶି ଦୁଆର ଲାଗିଛି, ଚାଳିଶି ଯୋଡ଼ା ଝରକା ରହିଛି । ରଜାପୁଅ କୋଠୀ ପାଖକୁ ଯାଇ ଦେଖିଲା ସେଠାରେ ଗୋଟିଏ ଦାନ୍ତୁରି ଅସୁରୁଣୀ ବୁଢ଼ୀ ମୁଣ୍ଡ ବାଳ ଝାମ୍ପୁରି କରି ଖସିପଡ଼ିଛି । ରଜାପୁଅ ବୁଢ଼ା କହିଥିବା ଭଳି ସିଧା ସେ ଅସୁରୁଣୀ ପାଖକୁ ଚାଲିଯାଇ ତା' କୋଳରେ ବସିପଡ଼ି କହିଲା, "ମାଆ ଲୋ ମାଆ, ମୁଁ ତୋ ସାନପୁଅ । ମୋତେ ମୋ ଚାଳିଶି ଭାଇଙ୍କ ହାତରୁ ରକ୍ଷା କର, ନହେଲେ ସେମାନେ ମୋତେ ମାରି ଖାଇଯିବେ ।"

ଅସୁରୁଣୀ ବୁଢ଼ୀ ତାକୁ ଆଉଁସି ଅଣ୍ଡାଳି କହିଲା, "ହଉରେ ତୁ ମୋ ସାନପୁଅ । ତୋ ଚାଳିଶି ଭାଇଙ୍କ ହାତରୁ ମୁଁ ତତେ ନିଶ୍ଚୟ ରକ୍ଷା କରିବି ।" ଏହା କହି ସେ ରଜାପୁଅକୁ ରୋଷେଇ ଘରକୁ ନେଇ ଗୋଟିଏ ପିଠା ଖାଇବାକୁ ଦେଲା । ରଜାପୁଅ ଯେମିତି ସେ ପିଠାଟି ଖାଇଦେଇଛି, ସେମିତି ଗୋଟାଏ ଝାଡ଼ୁ ମୁଠା ହୋଇଗଲା । ବୁଢ଼ୀ ଅସୁରୁଣୀ ସେ ଝାଡ଼ୁ ମୁଠାଟିକୁ କବାଟ କୋଣକୁ ଆଉଯାଇ ଦେଇ ପୁଣି ଯାଇ ଖଟ ପୋଢିଲା । କିଛି ସମୟ ପରେ ତା ଚାଳିଶିପୁଅ ଚରିବୁଲି ଘରକୁ ଫେରି ଆସିଲେ । ମାଆ ଅସୁରୁଣୀ ପୁଅଙ୍କୁ ଖାଇବାକୁ ଦେବାଲାଗି ରୋଷେଇ ଘରେ ପଶିଛି କି ନାହିଁ, ଚାଳିଶି ଭାଇ ଚାଳିଶି କବାଟ ଖୋଲି ଧୂମ୍‌ଧାମ୍ ହୋଇ ମାଆ ପାଖକୁ ଆସି କହିଲେ, "ମାଆଲୋ, ଆଜି ଆମେ କେଉଁଠି କିଛି ଖାଇବାକୁ ପାଇଲୁ ନାହିଁ—ତୁ କଣ ଖାଇବାକୁ ରଖିଛୁ ଶୀଘ୍ର ଦେ ।"

ମାଆ ସେମାନଙ୍କ ପାଇଁ ଚାଳିଶି ଥାଳିରେ ବାଢ଼ିବାକୁ ବସିଛି ବଡ଼ପୁଅ ପଚାରିଲା—"ମୋତେ କାହିଁକି ଘର ଭିତରଟା ନରନର ଗନ୍ଧାଉଛି । ଆମ ଘରେ ତୁ ମଣିଷ ଲୁଚେଇ ରଖିଛୁ କିଲୋ ?"

ମାଆ କହିଲା, "ଲୁଚେଇବି ନାହିଁ ତ କଣ ଦେଖେଇ ରଖିବି ? ତମେ ତ ଖାଇବାକୁ ଗାଉ ଗାଉ ହେଉଛ—ମଣିଷ ଦେଖିଲେ ଛାଡ଼ିବ ?"

ତଳପୁଅ କହିଲା, "ଏଁ ! ଖାଉବା ଦରବ ଖାଇବୁ ନାହିଁ ? ସେ କ'ଣ ଆମ ଭାଇ ନା ବନ୍ଧୁ ଯେ ଛାଡ଼ିଦେବୁ ? କାହିଁ କେଉଁଠି ରଖିଛୁ କାଢ଼ ତାକୁ ।"

ମାଆ କହିଲା, "ଭାଇ ନୁହେ ତ ଆଉ କ'ଣ ? ମୋତେ ଯେ ମାଆ ବୋଲି ଡାକିବ ସେ କ'ଣ ମୋ ପୁଅ ନୁହେ ନା ତୋ ଭାଇ ନୁହେ ? ତଥାପି ତୁମେ ଯଦି ଅବୁଝା ହେବ ତେବେ ମୁଁ କାହିଁକି ତାକୁ ଦେଖାଇବି ?"

ପୁଅମାନେ କହିଲେ, "ଏ କି କଥା ! ଆମେ କ'ଣ ଆମ ମାଆର ପୁଅକୁ ଖାଇଯିବୁ ? ତୋର ଯେ ପୁଅ ଆମର ସେ ଭାଇ । କାହିଁ କେଉଁଠି ଆମ ନୂଆଭାଇ ଅଛି ?"

ବୁଢ଼ୀ ଝାଡ଼ୁମୁଠାକୁ ଆଣି ଏରୁଣ୍ଡି ବନ୍ଧରେ ଦୁଲ୍‌କରି କଚାଡ଼ିଦେଲା; ସଙ୍ଗେ ସଙ୍ଗେ ରଜାପୁଅ ତା' ନିଜ ରୂପ ପାଇ ଠିଆହୋଇଗଲା । ଚାଳିଶିଭାଇ ତାକୁ ଖୁବ୍ ଆଦର ସ୍ନେହ କରି

ନିଜ ପାଖରେ ଖୁଆଇଲେ । ଖିଆପିଆ ଶେଷ ହେବା ପରେ ବଡ଼ଭାଇ ରଜାପୁଅଙ୍କୁ ପଚାରିଲା, "ଆଚ୍ଛା ନୂଆଭାଇ, ଆମ ଭୟରେ ଏଠିକି କେବେ କେହି ମଣିଷ ଆସେ ନାହିଁ । ତୁମେ କାହିଁକି ଏଠିକି ଆସିଲ ? ତୁମକୁ କ'ଣ ଭୟ ଲାଗିଲା ନାହିଁ ?"

ରଜାପୁଅ କହିଲା, "ମାଆ ଘରକୁ ପୁଅ ଆସିବ, ଭାଇ ଘରକୁ ଭାଇ ଆସିବ, ଏଥିପାଇଁ ଡରଭୟ କାହିଁକି ଲାଗିବ ? ଶୁଣିଲି ତୁମ କୋଠିରେ ସୁନା କୋଇଲି ଚଢ଼େଇ ଅଛି । ଆମର ସେ ଚଢ଼େଇଟି ଦରକାର, ତେଣୁ ମାଗିବାକୁ ଆସିଛି । କଥାରେ ଅଛି ମାଗିଲାଠୁ ସାନ କଥା ନାହିଁ କି ଦେଲାଠୁ ବଡ଼ କଥା ନାହିଁ । ସାନଭାଇ ମାଗୁଛି—ବଡ଼ଭାଇମାନେ କଣ ମନା କରିବେ ?"

ଅନ୍ୟ ଭାଇମାନଙ୍କ ମତ ଜାଣିବା ଲାଗି ବଡ଼ଭାଇ ଅନ୍ୟମାନଙ୍କୁ ଚାହିଁଲା । ଚାଳିଶି ଭାଇ ଆଖି ଠାରାଠାରି ହୋଇ ସୁନା କୋଇଲି ଥିବା ପିଞ୍ଜରାଟି ଆଣି ରଜାପୁଅ ଆଗରେ ଥୋଇ ଦେଲେ । ସେଠାକୁ ଆସୁ ଆସୁ ସୁନା କୋଇଲି ଏପରି ମଧୁର ସ୍ୱରରେ ଗାଇଲା ଯେ, ମନେ ହେଲା କର୍ଣ୍ଣ ଯେପରି ପବିତ୍ର ହୋଇଯାଉଛି । ସୁନା କୋଇଲିର ଗୀତ ଶୁଣି ସାରିବା ପରେ ଚାଳିଶ ଭାଇ କହିଲେ, "ନୂଆଭାଇ, ଆମେ ତୁମକୁ କୋଇଲିଟି ଦେବୁ ଯେ ଗୋଟିଏ ସର୍ତ୍ତରେ ଦେବୁ ।" ରଜାପୁଅ କହିଲା, "ହଁ, ହଁ, ମୁଁ ସବୁ ସର୍ତ୍ତକୁ ରାଜି । କ'ଣ କରିବାକୁ ହେବ କହ ।"

ବଡ଼ଭାଇ ଅସୁର କହିଲା, "ଆମ ରାଜ୍ୟ ସୀମାରେ ସେ ଯେଉଁ ବଡ଼ ପର୍ବତଟି ଦେଖୁଛ ସେଥିରେ ଚାଳିଶି ଭାଇ ପହିଲମାନ ରହନ୍ତି । ସେମାନଙ୍କ ପାଖରେ ଗୋଟିଏ ଉଡ଼ନ୍ତା ଘୋଡ଼ା ଅଛି । ତୁମେ ଯଦି ଆମପାଇଁ ସେ ଘୋଡ଼ାଟି ଆଣି ଦେବ ତେବେ ଆମେ ତୁମକୁ ସୁନା କୋଇଲିଟି ଦେଇ ଦେବୁ ।"

ରଜାପୁଅ ଏ ସର୍ତ୍ତରେ ରାଜି ହୋଇ ଉଡ଼ନ୍ତା ଘୋଡ଼ା ଆଣିବା ଲାଗି ବାହାରି ପଡ଼ିଲା । ଯାଉ ଯାଉ ବାଟରେ ଅନେକ ଦିନ ବିତିଗଲା । ଚାଳିଶି ପହିଲମାନଙ୍କ ପର୍ବତ ପାଖରେ ପହଞ୍ଚିବାବେଳକୁ ଟାଣ ଖରା ହେବାରୁ ସେ ଗୋଟିଏ ଝରଣା କୂଳରେ ବିଶ୍ରାମ ନେବାକୁ ବସିପଡ଼ିଲା । ସେଇଠି ବସି କ'ଣ ଦୁଇଟି ଗଣ୍ଡ ଖାଇବାକୁ ଯାଉଛି, ଏ ସମୟରେ ଦେଖିଲା ସେ ବାଟ ଦେଇ ଗୋଟିଏ କୋତରା ବୁଢ଼ା ଯାଉଛି । ରଜାପୁଅ ତାକୁ ଡାକପକାଇଲା, "ହୋ ମଉସା, ଏ ଝରଟାରେ ଇମିତି କୁଆଡ଼େ ଚାଲିଛ ? ଆସ, ଏଠି ଟିକିଏ ବସି ହାଲୁଆ ମାରି ଯିବ ।"

ବୁଢ଼ା ଆସି ବସୁ ବସୁ କହିଲା, "ହାଲୁଆ ମାରିବାକୁ ଡର କାହିଁରେ ବାପ ? ନ ଚାଲିଲେ ବାଟ ସରିବ ନାହିଁ ।" ରଜାପୁଅ ତାକୁ ଆଦରରେ କହିଲା, "ବସ ମଉସା, ମୋର ବି ବାଟ ଚାଲିବାକୁ ଅଛି । ଆସ, ଦ ଦ ପଟ ରୁଟି ଖାଇଦେବା—ତା ପରେ ପୁଣି ବାଟ ଚାଲିବା ।"

ବୁଢ଼ା ରଜାପୁଅ ସହିତ ଖାଇ ବସିଲା । ଖାଉ ଖାଉ ପଚାରିଲା, "ବାପ, ତୁମେ

କେଉଁଠିକି ଯାଉଛୁ ?" ରଜାପୁଅ କହିଲା, "ଯାଉଛୁ ଗୁଲଣି ପହିଲିମାନଙ୍କ କୋଠିକୁ । ସେଠାରେ ଗୋଟିଏ ଉଡ଼ନ୍ତା ଘୋଡ଼ା ଅଛି, ସେଇ ଘୋଡ଼ାଟି ଆଣିବାକୁ ଯାଉଛୁ ।" ବୁଢ଼ା କହିଲା, "ଉଡ଼ନ୍ତା ଘୋଡ଼ା ଆଣିବ ! ସେ କ'ଣ ସହଜ କଥା !! ସେ ଗୁଲଣି ପହିଲି-ମାନଙ୍କଠାରୁ ଖସିଲେ ତ ଆଣିବ ? ସେ ଗୁଡ଼ାକ ମହା ଦୁର୍ଦ୍ଧାନ୍ତ ।"

"ହେଲେ କ'ଣ କଲେ ସେମାନଙ୍କ ହାତରୁ ରକ୍ଷା ପାଇବ କହୁ ଜାଣିଚ ?"

ବୁଢ଼ା କହିଲା, "ଗୋଟିଏ କାମ କରିବ । ତୁମେ ଯାଇ ସେ କୋଠିରେ ପହଞ୍ଚିଲେ ଦେଖିବ ତାର ଗୋଟିଏ ପାଖରେ ଗୋଟିଏ ମସ୍ତବଡ଼ ଢେଷଘର ଅଛି । ସେ ଢେଷଘର ବାରଣ୍ଡାରେ ଦେଖିବ ଗୋଟିଏ ଅସୁରୁଣୀ ବୁଢ଼ୀ ବସି ଅଟା ଦଳୁଛି । ସେ ବୁଢ଼ୀ ସେ ଗୁଲଣି ପହିଲିମାନଙ୍କ ମାଆ । ତୁମେ ଭୟ ନକରି ସିଧା ଧାଇଁଯାଇ ବୁଢ଼ୀର କୋଳରେ ବସିପଡ଼ି କହିବ, 'ମାଆ, ମୋତେ ତୋ ଗୁଲଣି ପୁଅଙ୍କ ହାତରୁ ରକ୍ଷାକର ।' ବୁଢ଼ୀ ଯଦି ଗୁହିଁବ ତେବେ ନିଶ୍ଚୟ ତୁମକୁ ସାହାଯ୍ୟ କରିବ ।"

ରଜାପୁଅ ବୁଢ଼ାକୁ ଅନେକ ଧନ୍ୟବାଦ ଦେଇ ବିଦାୟ ଦେବାପରେ ପୁଣି ନିଜ ବାଟରେ ଗୁଲିଲା । ଗୁଲି ଗୁଲି ସେଦିନ ସନ୍ଧ୍ୟାବେଳକୁ ଅସି ଗୁଲଣି ପହିଲିମାନଙ୍କ କୋଠିରେ ପହଞ୍ଚିଗଲା । ଦେଖିଲା ସତରେ ଢେଷଘର ବାରଣ୍ଡାରେ ବସି ଗୋଟିଏ ବୁଢ଼ୀ ଅସୁରୁଣୀ ରୁଟି କରିବା ଲାଗି ଅଟା ଦଳୁଛି । ରଜାପୁଅ ଦୌଡ଼ିଯାଇ ତା କୋଳରେ ବସିପଡ଼ି କହିଲା, "ମାଆ, ମୁଁ ତୋ ସାନପୁଅ । ମୋତେ ମୋ ଗୁଲଣି ପହିଲିମାନ ଭାଇଙ୍କ ହାତରୁ ରକ୍ଷାକର ।"

ବୁଢ଼ୀ ଅଟାଦଳା ବନ୍ଦକରି ରଜାପୁଅ ମୁହଁକୁ ଗୁହିଁଲା । ତା ସୁନ୍ଦର ବଦନ ଦେଖି, ତା ମଧୁର ବଚନ ଶୁଣି ସେ କହିଲା, "ହଉରେ ଧନ ଡରନା, ମୁଁ ତତେ ରକ୍ଷା କରିବି ।" ଏହା କହି ସେ ତା ପିଠିଟିକି ଆଉଁସି ଦେଲା । ସଙ୍ଗେ ସଙ୍ଗେ ରଜାପୁଅ ଗୋଟିଏ ନାଲି ଟହଟହ ସେଓଫଳ ହୋଇଗଲା । ବୁଢ଼ୀ ସେ ସେଉଟି ନେଇ ଢେଷଘର ଠଣାରେ ରଖି ଦେଇ ରୁଟି ବେଲୁଛି, ଏ ସମୟରେ ଗୁଲଣି ପହିଲିମାନ ଆସି ଘରେ ପହଞ୍ଚିଗଲେ । ମାଆ ପାଖକୁ ଆସୁ ଆସୁ ସମସ୍ତେ ପାଟି କରି ଉଠିଲେ, "କଲେ ମା, ଆଜି କଣ ଢେଷଘରଟା ନରନର ଗନ୍ଧାଉଛି ! ତୁ ନିଶ୍ଚୟ ଏ ଭିତରେ ମଣିଷ ଲୁଚେଇ ରଖିଚୁ ।"

ବୁଢ଼ୀ ଖପ୍‌ପା ହୋଇ କହିଲା; "ଲୁଚେଇ ରଖିବି ନାହିଁ ତ ଆଉ କ'ଣ ତୁମ ମୁହଁରେ ଛାଡ଼ିଦେବି ? କେହି ଯଦି ଆସି ମୋତେ ମାଆ ବୋଲି ଡାକେ, ମୋ କୋଳରେ ବସି ମିନତି କରେ, ତାକୁ କ'ଣ ମୁଁ ପୁଅ ପରି ଦେଖିବି ନାହିଁ ନା ସେ ତୁମର ଭାଇ ସମାନ ହେବ ନାହିଁ ? କିନ୍ତୁ ତୁମେ ଦୁଷ୍ଟଗୁଡ଼ାକ କଣ ସେ କଥା ମାନିବ ?"

ମାଆ କଥା ଶୁଣି ଗୁଲଣିଭାଇ କାନ ମୁଣ୍ଡ କୁଣ୍ଡାଇ ହୋଇ କହିଲେ, "ଆଲେ ମା, ତୋ' ପୁଅ ଆମ ଭାଇ ନୁହେଁ ତ ଆଉ କଣ ? ଆମେ ତାକୁ ନିଶ୍ଚୟ ଭାଇ ପରି ଆଦର କରିବୁ । କାହିଁ ଆମର ସେ ନୂଆ ଭାଇଟି କେଉଁଠି ଅଛି ?"

ବୁଢ଼ୀ ଏକଥା ଶୁଣି ସେଉଫଳଟିକୁ ଟିକିଏ ଆଉଁସି ଅଣ୍ଟାଳ ସୁଅଙ୍କ ପାଖରେ ଥୋଇ ଦେଲା । ସଙ୍ଗେ ସଙ୍ଗେ ରଜାପୁଅ ନିଜ ରୂପ ଧରି ସେଠାରେ ଠିଆ ହୋଇଗଲା । ଗ୍ଭଲିଶି ପହିଲିମାନ ତାକୁ ଆଦର କରି ସେମାନଙ୍କ ସହିତ ରୁଟି ଖାଇବାକୁ ଡାକିଲେ । ରୁଟି ଖାଇ ସାରି ଖୁସି ଗପ କରୁ କରୁ ବଡ଼ଭାଇ ରଜାପୁଅକୁ ପଗ୍ଭରିଲା, "ଆରେ ନୂଆଭାଇ, ତୁ ଆମର ଏଠିକି କ କାମରେ ଆସିଛୁ ?"

ରଜାପୁଅ କହିଲା, "ଶୁଣିଲି ତୁମ ଘରେ ଗୋଟିଏ ଉଡ଼ନ୍ତା ଘୋଡ଼ା ଅଛି । ଆସିଛି ତୁମଠାରୁ ସେ ଘୋଡ଼ାଟି ମାଗିନେବି । ମୁଁ ତୁମର ସାନ ଭାଇ, ମୋତେ କ'ଣ ଘୋଡ଼ାଟି ଦେବନାହିଁ ?"

ଏକଥା ଶୁଣି ଗ୍ଭଲିଶି ପହିଲିମାନ ଉଗ୍ରଠର ହୋଇ କହିଲେ, "ଓଃ, ଏ କାମରେ ଏତେ ବାଟ ଆସିଲ ? ଠିକ୍ ଅଛି, ଆମେ ତୁମକୁ ଘୋଡ଼ାଟି ଦେବୁ, କିନ୍ତୁ ତା' ପୂର୍ବରୁ ତୁମକୁ ଆମ ପାଇଁ ଗୋଟିଏ କାମ କରି ଦେବାକୁ ପଡ଼ିବ—ରାଜି ତ ?"

ରଜାପୁଅ କହିଲା, "ଭାଇଙ୍କ କଥାରେ ଅରାଜି ହେବି ନା ! କେବେ ନୁହେଁ । କିନ୍ତୁ କାମଟି ମୋ ହାତରେ ହୋଇପାରିଲେ ହେଲା ।"

ପହିଲିମାନ ଭାଇମାନେ କହିଲେ, "ଆମ ପଡ଼ୋଶୀ ରାଜାଙ୍କର ଗୋଟିଏ ଅତି ସୁନ୍ଦରୀ ଝିଅ ଅଛି । ସେ ସବୁ ଗୁଣରେ ପୂର୍ଣ୍ଣ, ତେଣୁ ତା' ନାଆଁ ହେଉଛି ଗୁଣବତୀ କନ୍ୟା । ତୁମେ ଯାଇ ସେ ଗୁଣବତୀ କନ୍ୟାକୁ ଆମ ପାଇଁ ଆଣିଦେଲେ, ଆମ ବଡ଼ଭାଇ ତାକୁ ବିବାହ କରିବେ । ତା' ପରେ ତୁମେ ଆମ ଏଠାରୁ ଉଡ଼ନ୍ତା ଘୋଡ଼ା ନେଇ ଗ୍ଭଲିଯିବ ।"

ତା' ପରଦିନ ସକାଳୁ ଉଡ଼ନ୍ତା ଘୋଡ଼ାଟି ଦେଖିସାରି ରଜାପୁଅ ଗୁଣବତୀ କନ୍ୟାକୁ ଆଣିବା ଲାଗି ବାହାରି ପଡ଼ିଲା । କିଛିଦିନ ଭିତରେ ସେ ଯାଇ ପଡ଼ୋଶୀ ରାଜ୍ୟ ସୀମାରେ ପହଞ୍ଚିଗଲା । ଦୂରରୁ ସେ ରାଜ୍ୟ ରାଜଧାନୀର ବଡ଼ ବଡ଼ କୋଠାଘର ଓ ଗୀର୍ଜାଘରଗୁଡ଼ାକ ଦେଖାଯାଉଥାଏ । ରାଜଧାନୀକୁ ଯିବା ପୂର୍ବରୁ ଟିକିଏ କଫି ଖାଇ ତାଜାହୋଇ ଯିବି ବୋଲି ଭାବି ରଜାପୁଅ ରାସ୍ତାକଡ଼ର ଗୋଟିଏ ଗଛମୂଳେ ବସି ଟିକିଏ କଫି ତିଆରି କଲା । କଫି ଖାଇବାକୁ ବସିଛି, ଏ ସମୟରେ ସେ ଦେଖିଲା ସେହି ବାଟଦେଇ ଜଣେ ପାଚିଲାବାଳିଆ ବୁଢ଼ା ବାଡ଼ିଖଣ୍ଡିଏ ଧରି ଗ୍ଭଲିଛି । ବୁଢ଼ାକୁ ଦେଖି ରଜାପୁଅ ଡାକ ପକାଇଲା, "ହୋ ମଉସା, ଆସ ଆସ, ଟିକିଏ କଫି ଖାଇ ଯାଅ । ବୁଢ଼ାଲୋକ ଗ୍ଭଲିଗ୍ଭଲି ଥକିଯିବଣି ।"

ଡାକ ଶୁଣି ବୁଢ଼ା ଆସି ପହଞ୍ଚିଗଲା । ରଜାପୁଅ ତାକୁ ଟିକିଏ କଫି ଦେଇ ନିଜେ ଟିକିଏ ପିଉଛି, ବୁଢ଼ା ପଗ୍ଭରିଲା, "ପୁଅ, ଏଣିକି କୁଆଡ଼େ ଯାଉଛ କି ?" ରଜାପୁଅ କହିଲା, "ଶୁଣିଥିବ ଏ ଦେଶ ରଜାଙ୍କର ଗୁଣାବତୀ କନ୍ୟା ବୋଲି ଗୋଟିଏ ଝିଅ ଅଛି । ମୁଁ ଯାଉଛି ସେ ଝିଅଟିକୁ ଆଣିବି ।"

ଏହାଶୁଣି ବୁଢ଼ା କହିଲା, "ସେ ତ କିଛି କମ୍ କାମ ନୁହେଁ । ସେଥିରେ ନାନା ବିପଦ ରହିଛି । ଶୁଣ ମୁଁ ତୁମକୁ ଗୋଟିଏ ଦମୁନିଆଁ ଶର ଦେଉଛି, ପାଖରେ ରଖିଥାଅ । ଯାହାକୁ

ଦେଖିବ, ଚାହିଁଲେ ତାକୁ ଲକ୍ଷ୍ୟ କରି ମାରିବ । ଦେଖିବ ଏ ଶର ମୁହଁରୁ କେହି ବର୍ତ୍ତିପାରିବନାହିଁ ।"

ରଜାପୁଅ ବୁଢ଼ାକୁ ଅନେକ ଧନ୍ୟବାଦ ଦେଇ ଶରଟି ରଖିଲା । ବୁଢ଼ା ତାର ନିଜ ବାଟରେ ଚାଲିଗଲା; ରଜାପୁଅ ଚାଲିଲା ରାଜଧାନୀ ଆଡ଼େ । ଯାଉ ଯାଉ ଦେଖିଲା ଗୋଟିଏ ମସ୍ତବଡ଼ ଶାଗୁଣା ଗୋଟିଏ ଶବକୁ ଟାଣିନେଉଛି । ରଜାପୁଅ ସଙ୍ଗେ ସଙ୍ଗେ ଶାଗୁଣାଟିକୁ ମାରିଦେବା ଲାଗି ଧନୁରେ ଗୁଣ ଚଢ଼ାଇ ଶର ଖଞ୍ଜିଦେଲା । ଶାଗୁଣା ଆଖିରେ ସେ ଶରଟି ପଡ଼ିବା କ୍ଷଣି ସେ ଶବଟିକୁ ଛାଡ଼ିଦେଇ ଧାଇଁ ଆସି ରଜାପୁଅ ପାଦତଳେ ପଡ଼ିଗଲା । କହିଲା— ମହିମା, ମୋତେ ରକ୍ଷା କରନ୍ତୁ; ମୁଁ ନିଶ୍ଚୟ ଦିନେ ମହିମାଙ୍କର ଉପକାର କରିବି ।

ରଜାପୁଅ କହିଲା, "ଆରେ, ଗୋଟାଏ ଶାଗୁଣାଠାରୁ ମୁଁ କି ଉପକାର ଆଶା କରିବି କହିଲୁ ?"

ଶାଗୁଣା କହିଲା, "ମୁଁ ଆକାଶରେ ଉଡ଼େ; ମହିମା ଯେତେବେଳେ ଚାହିଁବେ ମୁଁ ସେତେବେଳେ ଆସି ମହିମାଙ୍କୁ ଆକାଶର ଯେତେ ଉଚ୍ଚକୁ କହିବେ ସେତେ ଉଚ୍ଚକୁ ନେଇଯିବି । ଆଉ ଅଧିକ କଣ କରିପାରିବି ? ହେଇଟି ମୋର ଏ ପରଟି ରଖିଆନ୍ତୁ; ଯେତେବେଳେ ମୋତେ ଲୋଡ଼ିବେ, ସେତେବେଳେ ଏଥିରେ ଟିକିଏ ନିଆଁ ଲଗାଇ ଦେବେ । ବେଶ୍, ସେଠିକରୁ ମୁଁ ଜାଣିଯିବି ଯେ ମହିମା ମତେ ଲୋଡ଼ୁଛନ୍ତି । ଦେଖିବେ ଆଖି ପିଛୁଳାକେ ଆସି ହାଜର ହୋଇଯିବି ।"

ରଜାପୁଅ ଶାଗୁଣା ପରଟି ରଖି ତାକୁ ଛାଡ଼ିଦେଲା ଏବଂ ନିଜ ବାଟରେ ଆଗେଇ ଚାଲିଲା । ରାସ୍ତାଟି ସମୁଦ୍ର କୂଳଦେଇ ଯାଇଥାଏ । ସେ ସମୁଦ୍ର କୂଳ ଦେଇ ଚାଲିଛି, ଦେଖିଲା ସମୁଦ୍ରରେ ଗୋଟିଏ ବଡ଼ମାଛ ଆଉ ଗୋଟିଏ ମାଛକୁ ଗିଳି ଖାଇ ଯାଉଛି । ରଜାପୁଅ ସଙ୍ଗେ ସଙ୍ଗେ ମାଛଟି ମାରିଦେବାକୁ ଧନୁଶର ଟେକିଲା, କିନ୍ତୁ ସେ ଶର ଦେଖିଦେଇ ମାଛଟା ପାଣିଭିତରୁ ବାଲି ଉପରକୁ ଡେଇଁପଡ଼ି ରଜାପୁଅ ପାଦତଳେ ପଡ଼ି କହିଲା, "ପ୍ରଭୁ, ମୋତେ ମାରନ୍ତୁ ନାହିଁ, ମୁଁ ଦିନେହେଲେ ଆପଣଙ୍କର ଉପକାର କରିବି ।"

ରଜାପୁଅ ହସିଦେଇ ପଚାରିଲା, "ମୁଁ ମାଛଠାରୁ କି ଉପକାର ପାଇବି କହିଲୁ ?" ମାଛ କହିଲା, "ପ୍ରଭୁ, ମୁଁ ହେଲି ଜଳଜୀବ । ପ୍ରଭୁ ଯେତେବେଳେ ଚାହିଁବେ ମୁଁ ସେତେବେଳେ ଆସି ଆପଣଙ୍କୁ ମୋ ପିଠିରେ ବସାଇ ସମୁଦ୍ର ତଳକୁ ନେଇଯିବି । ମୋର ଏ କାତଟି ରଖିଆନ୍ତୁ, ଦରକାର ପଡ଼ିବାକ୍ଷଣି ଏଇଟିକୁ ନିଆଁରେ ଦେଖାଇଦେବେ—ମୁଁ ସଙ୍ଗେ ସଙ୍ଗେ ଆସି ପ୍ରଭୁଙ୍କ ଦୁଆରେ ହାଜର ହୋଇଯିବି ।"

ବେଶ୍, ବେଶ୍, କହି ରଜାପୁଅ ମାଛକାତଟି ନେଇ ପାଖରେ ରଖିଲା । ଏଥର ସେ ନଗର ଆଡ଼େ ଚାଲିଛି ଦେଖିଲା ଗୋଟାଏ କସରା ବିଲୁଆ ଗୋଟାଏ କୁକୁଡ଼ାକୁ ଧରିବା ଲାଗି ଗୋଡ଼ାଉଛି । ସେ ବିଲୁଆଟିକୁ ମାରିବା ଲାଗି ଧନୁରେ ଶର ଖଞ୍ଜୁଛି, ଏ ସମୟରେ ବିଲୁଆଟି କୁକୁଡ଼ାକୁ ଛାଡ଼ିଦେଇ ତା' ପାଦ ପାଖକୁ ଦୌଡ଼ିଆସି କହିଲା, "ପ୍ରଭୁ, ମୋତେ ରକ୍ଷାକରନ୍ତୁ ।

ମୁଁ ଛୋଟ ବଲୁଆଟାଏ ସତ; କିନ୍ତୁ ଦରକାର ବେଳେ ମୁଁ ସାଆନ୍ତଙ୍କର ଏମିତି ଉପକାର କରିବି ଯେ, ମୋତେ ମୋଟେ ଭୁଲି ପାରିବେ ନାହିଁ ।"

ରଜାପୁଅ ହସି ହସି ପଚାରିଲା, "ସତ କହୁଛୁ ?"

"ସତ କହୁଛି ସାଆନ୍ତେ । ଆପଣ ମୋର ଲଞ୍ଜରୁ ରୁମଟିଏ ରଖିଥାନ୍ତୁ । ଯେତେବେଳେ କିଛି ବିପଦରେ ପଡ଼ିବେ, ସେତେବେଳେ ଏଇଟିକି ନିଆଁରେ ପକାଇଦେବେ, ଦେଖିବେ ମୁଁ ଆସି ଆଖିପିଛୁଳାକେ ହାଜର ହୋଇଯିବି; ମୋ କରାମତି ତ କାମରେ ଦେଖିବେ, କଥାରେ କାହିଁକି କହିବି ?"

"ହଉ, ତା ହେଲେ ତତେ ଛାଡ଼ିଦେଲି; ଯା ଖୁସିରେ ରହ ।" କହି ରଜାପୁଅ ବଲୁଆ ଲୋମଟି ଧରି ନଗରରେ ପଶିଲା । ନଗର ମଝିରେ ରାଜାଙ୍କ ନଅର ଶୋଭାପାଉଥାଏ । ରଜାପୁଅ ଯାଇ ରାଜଦରବାରରେ ପହଞ୍ଚୁ ପହଞ୍ଚୁ ରାଜା ପଚାରିଲେ, "ଆପଣ କିଏ ସେ ? ଆମ ଦରବାରରେ ଆପଣଙ୍କର କି କାମ ଅଛି ?"

ରଜାପୁଅ ନିଜର ପରିଚୟ ଦେଇ ଆସିବାର କାରଣ ଜଣାଇବାରୁ ରାଜା କହିଲେ, "ଉତ୍ତମ କଥା । କିନ୍ତୁ ଆପଣଙ୍କ ଆଗରୁ ଅନେକ ରାଜକୁମାର ଆମ ଗୁଣବତୀର ହାତ ଧରିବାପାଇଁ ଆସି ଏଠାରେ ପ୍ରାଣ ଦେଇ ଯାଇଛନ୍ତି । କଥା ହେଲା, ଅପଣ ଯଦି ଆମ ଜେମାର ଗୋଟିଏ ପରୀକ୍ଷାରେ ସଫଳ ନ ହେବେ, ତେବେ ଆପଣଙ୍କୁ ଫାଶିରେ ଚଢ଼ିବାକୁ ପଡ଼ିବ ।"

ରଜାପୁଅ ପଚାରିଲା, "କଣ ସେ ପରୀକ୍ଷା କହନ୍ତୁ ଦେଖି ।"

ରାଜା କହିଲେ, "ସେ ଗୋଟାଏ ଲୁଚକାଳି ଖେଳ । ତୁମେ ଲୁଚିବ ଏବଂ ଆମ ଜେମା ଖୋଜିବେ । ତୁମେ ଲୁଚିବାର ଘଣ୍ଟାକ ଭିତରେ ଯଦି ସେ ତୁମକୁ ଖୋଜି ବାହାର କରିଦେଲେ, ତେବେ ତୁମେ ହାରିଗଲ ବୋଲି ଧରିଯିବ; କିନ୍ତୁ ଯଦି ସେ ତୁମକୁ ଖୋଜି ବାହାର କରିପାରିବେ ନାହିଁ, ତେବେ ତୁମର ଜୟ ହେଲା । ଅବଶ୍ୟ ତୁମକୁ ଏପରି ଲୁଚିବା ଲାଗି ତିନିଥର ସୁଯୋଗ ଦିଆଯିବ । ଯଦି ତିନିଥରଯାକ ହାରିଗଲ ତେବେ ଫାଶିରେ ଚଢ଼ିବ, ଯଦି ଅନ୍ତତଃ ଗୋଟିଏ ଥର ଜିଣିଗଲ, ତେବେ ତୁମେ ଜେମାଙ୍କ ହାତ ଧରିବାକୁ ଯୋଗ୍ୟ ବୋଲି ବିବେଚିତ ହେବ । କ'ଣ ଏହି ସର୍ତ୍ତରେ ଲୁଚିବାକୁ ରାଜିଅଛ ?"

ରଜାପୁଅ କହିଲା, "ହଁ ମଣିମା, ମୁଁ ଏଥିକି ରାଜିଅଛି ।"

ତା'କଥା ଶୁଣି ଦରବାରର ଲୋକେ ହସି ଉଠିଲେ । କେହି କେହି କହିଲେ, ବଡ଼ ବଡ଼ ଗଲେ ଫସର ଫାଟି, ସାନ ଆସିଲେ ବେସର ବାଟି ! କଥା କଣ କି ଗୁଣବତୀ କନ୍ୟାର ଗୋଟିଏ ଶକ୍ତି ଥାଏ ଯେ ସେ ଲୁଚିଥିବା ଲୋକକୁ ଦେଖିବାଲାଗି ଆକାଶ ପାତାଳ ସବୁଆଡ଼େ ଚାହିଁପାରେ, ତେଣୁ ତା ଆଖିରେ କିଛି ଅଛପା ରହେନାହିଁ । କିନ୍ତୁ ରଜାପୁଅ ତ ଏତେ କଥା ଜାଣେନା, ତେଣୁ ସେ ଲୁଚିବାକୁ ରାଜି ହୋଇଗଲା ଏବଂ ସେ କେଡ଼େ ବୋକା ବୋଲି ଅନ୍ୟମାନେ ହସିଲେ । ଯାହାହେଉ ରାଜା ତାକୁ ନେଇ ଗୁଣବତୀ ପାଖରେ ପହଞ୍ଚାଇ

ଦେଲେ । ଲୁଚକାଲି ଖେଳପାଇଁ ସଜବାଜ ଆରମ୍ଭ ହୋଇଗଲା । ଗୁଣବତୀ କହିଲା, "ମୁଁ ଆଖିବୁଜି ଏକ ଠାରୁ ଚାଳିଶି ଯାଏ ଗଣୁଛି ଏ ଭିତରେ ତୁମେ ଲୁଚିଯାଅ । ଚାଳିଶି ଗଣି ସାରିବା ପରେ ମୁଁ ଖୋଜିବାକୁ ବାହାରିବ ।"

ଗୁଣବତୀ ଆଖିରେ ପଟି ଭିଡ଼ି ଏକ, ଦୁଇ, ତିନି—ଗଣି ଚାଲିଲା । ଏ ଭିତରେ ରଜାପୁଅ ଶାଗୁଣା ପରଟି କାଢ଼ି ସେଥିରେ ଟିକିଏ ନିଆଁ ଲଗାଇଦେଲା । ମୁହୂର୍ତ୍ତିକ ଭିତରେ ଶାଗୁଣାଟି ଯାଇଁକିନା ଉଡ଼ିଆସିଲା ଏବଂ ତାକୁ ପିଠିରେ ବସାଇ ଆଉ ମୁହୂର୍ତ୍ତିରେ ଆକାଶକୁ ଉଡ଼ିଗଲା । ସେ ଶାଗୁଣାକୁ କହିଲା, "ଆରେ, ମତେ ମେଘ ଉପରକୁ ନେବୁ । ଯେପରିକି ମର୍ତ୍ତ୍ୟରେ ଥିବା ଲୋକେ ଦେଖିପାରିବେନାହିଁ ।"

ଶାଗୁଣା ସଙ୍ଗେସଙ୍ଗେ ତାକୁ ନେଇ ମେଘ ପଛରେ ଲୁଚିଇ ଦେଲା । ଗୁଣବତୀ ରାଜକନ୍ୟା ଚାଳିଶି ଗଣିସାରି ଆଖିଖୋଲି ଦେଖେ ତ ରଜାପୁଅ କାହିଁ କେଉଁଠି ଦେଖାଯାଉ ନାହିଁ । ସେ ତାର ଦିବ୍ୟ ଦୃଷ୍ଟି ଲଗାଇ ମର୍ତ୍ତ୍ୟମଣ୍ଡଳଟା ଯାକ ଖୋଜିଗଲା; କିନ୍ତୁ ରଜାପୁଅକୁ ଦେଖିପାରିଲାନାହିଁ । ତା'ପରେ ସେ ଆକାଶ ମଣ୍ଡଳକୁ ଚାହିଁଲା, ଦେଖିଲା ରଜାପୁଅ ଯାଇ ଗୋଟିଏ କଳା ମେଘ ପଛରେ ଲୁଚିଛି । ସେ ସଙ୍ଗେ ସଙ୍ଗେ ପାଟିକରି ଉଠିଲା, "ହେ, ଦେଖିଦେଲି, ଦେଖିଦେଲି । ତୁମେ ସେ କଳାମେଘ ପଛରେ ଲୁଚିଛ ।"

ଏପରି ଭାବରେ ଧରାପଡ଼ିଯାଇ ରଜାପୁଅ ବାଧ୍ୟ ହୋଇ ଓହ୍ଲାଇ ଆସିଲା । ଗୁଣବତୀ କହିଲା, "ଏତେ ଲୋକ ଲୁଚିବାକୁ ଆସିଥିଲେ, କିନ୍ତୁ କେହି ଆଉ ଏପରି ଆକାଶ ମାର୍ଗରେ ଲୁଚିନଥିଲେ । ସତରେ ତୁମକୁ ଭଲ ଲୁଚି ଆସେ । କିନ୍ତୁ କେତେହେଲେ କ'ଣ ହେବ, ଆଉଥରେ ଭଲ କରି ଲୁଚ ।"

ରଜାପୁଅ କାନ ମୁଣ୍ଡ ଆଉଁସି ପୁଣିଥରେ ଲୁଚିବାକୁ ସଜହେଲା । ଗୁଣବତୀ ଆଖିରେ ପଟି ବାନ୍ଧି ଏକ, ଦୁଇ, ତିନି···ଗଣୁଥାଏ, ରଜାପୁଅ ଏଣେ ରୂପକନା ମାଛ କାତିଟି କାଢ଼ି ଟିକିଏ ନିଆଁ ରେ ଦେଖାଇଦେଲା । ଅଖିପିଚୁଲାକେ ମାଛ ଆସି ପହଞ୍ଚିଗଲା ଏବଂ ରଜାପୁଅକୁ ପିଠିରେ ବସାଇ ଆଖିପିଚୁଲାକେ ନେଇ ସମୁଦ୍ର ଭିତରେ କେଉଁ ଅତଳ ତଳେ ଲୁଚିଇ ଦେଲା । କହିଲା, "ମଣିମା, ଡରନ୍ତୁ ନାହିଁ; ସମୁଦ୍ର ଭିତରେ ପଶି ଆପଣଙ୍କୁ କେହି ଖୋଜି ପାରିବ ନାହିଁ ।" ଗୁଣବତୀ କନ୍ୟା ଚାଳିଶି ଯାଏଁ ଗଣିସାରି ଆଖିରୁ ପଟି ଖୋଲି ଚାରିଆଡ଼କୁ ଚାହିଁଗଲା । ମର୍ତ୍ତ୍ୟମଣ୍ଡଳ ତମାମ ଖୋଜିସାରି ଆକାଶ ମଣ୍ଡଳରେ ଆଖି ବୁଲାଇଲା । କେଉଁଠି ଦେଖିବାକୁ ନ ପାଇ ଭାବିଲା ଏଥର ନିଶ୍ଚୟ ଏ ରଜାପୁଅ ଜିଣିଗଲେ । ସେତେବେଳକୁ ଘଣ୍ଟାଏ ବିତିଯିବାକୁ ବସିଛି, ଏ ସମୟରେ ତା' ଦୃଷ୍ଟି ଯାଇ ପାତାଳପୁରରେ ପଡ଼ିଲା । ସମୁଦ୍ର ତଳ ଖୋଜି ଖୋଜି ସେ ଦେଖିଲା ରଜାପୁଅ ଗୋଟିଏ ବଡ଼ ମାଛ ପିଠିରେ ବସି ଗୋଟିଏ ଶିଉଳି ପାହାଡ଼ ପଛରେ ଲୁଚିଛି । ସେ ସଙ୍ଗେ ସଙ୍ଗେ ଖିଲିଖିଲି ହୋଇ ହସି ଉଠି କହିପକାଇଲା, "ବାଃ ! ବାଃ !! ତୁମେ ବଢ଼ିଆ ଲୁଚିପାର ଏକା । ମୁଁ ତୁମକୁ ଦେଖି ନ ପାରିଥିଲେ ଖୁବ୍ ଭଲହୋଇଥାନ୍ତା; କିନ୍ତୁ ମୋ ଦୃଷ୍ଟିରେ ପରି କେହି ଲୁଚିପାରିବ ନାହିଁ, ତୁମେ

ଆକାଶରେ ଲୁଚିଲେ ଯେତେ ପାତାଳରେ ଲୁଚିଲେ ସେତେ । ଦେଖିଦେଲି—ତୁମେ ହାରିଗଲ ।"

ରଜାପୁଅ କାନମୁଣ୍ଡ ଆଉଁଶି ସମୁଦ୍ର ଭିତରୁ ବାହାରି ଆସିଲା । ଗୁଣବତୀ କହିଲା, "ଆଉ ଗୋଟିଏ ବାଜି ରହିଲା । ଏ ବାଜିକି ଯଦି ହାରିଯିବ ତେବେ ସବୁ ରଜାପୁଅଙ୍କ ପରି ତୁମେ ବି ଫାଶି ପାଇବ । ମତେ ଭାରି ଦୁଃଖ ଲାଗିବ ସତେ । ଏ ଶେଷ ବାଜିକି ତୁମର ସବୁ ବିଦ୍ୟାବୁଦ୍ଧି ଲଗାଇ ଲୁଚିବ, ଦେଖିବା ତୁମେ ହାରୁଛ କି ମୁଁ ହାରୁଛି ।"

ରଜାପୁଅ ମନେ ମନେ ଭାବିଲା, ଝିଅଟିକୁ ଯେତେବେଳେ ଦେଖିଛି ଡର ଲାଗୁନାହିଁ । କହିଲା, "ଠିକ୍ ଅଛି, ଆଖିରେ ପଟିଟାକୁ ଠିକ୍ କରି ବାନ୍ଧ, ମୁଁ ଲୁଚିବାକୁ ବାହାରିଲି ।" ଗୁଣବତୀ ଆଖିରେ ନେତପରସ୍ତ ପଟିବାନ୍ଧି ଏକ, ଦୁଇ କରି ଗଣିବାକୁ ଆରମ୍ଭ କରୁକରୁ ରଜାପୁଅ ବଲୁଆ ଲେମଟିକୁ ନାଆଁ ଧରି ଡାକିଦେଲା । ଗୁଣବତୀ କୋଡ଼ିଏ ଗଣିବା ବେଳକୁ ବଲୁଆ ଆସି ରଜାପୁଅକୁ ନେଇ ଗୋଟାଏ ଗମ୍ଭୀର ଗାତ ଭିତରେ ଲୁଚାଇ ଦେଲାଣି । ରଜାପୁଅ ତାକୁ କହିଲା, "ହଇରେ, ସେ ଗୁଣବତୀ କନ୍ୟା ତ ଆକାଶ ପାତାଳ ସବୁ ଦେଖିପାରୁଛି, ତୁ ଏ ଛୋଟ ଗାତଟାରେ ଆଣି ମୋତେ ଲୁଚାଇ ଦେଲୁ ଯେ ମୁଁ ତା ଦୃଷ୍ଟିରୁ କିଣ ରକ୍ଷା ପାଇପାରିବ ?"

ବଲୁଆ କହିଲା, "ସାଆନ୍ତେ, ଏପରି ଘାବୋଇଯାଉଛନ୍ତି କାହିଁକି, ଦେଖନ୍ତୁ ମୁଁ କଣ କରୁଛି । ସେ ସିନା ଆକାଶ ପାତାଳରେ ଜାଣିଗଲା, ଦେଖନ୍ତୁ ଏଥର ମର୍ତ୍ତ୍ୟରେ କିପରି ହାରିବ ।" ଗୁଣବତୀ ତେଣେ ଏକୋଇଶି, ବାଇଶି କରି ଗଣୁ ଗଣୁ ବଲୁଆ ହୁଙ୍କେ ହୁଙ୍କେ ହୋ ରଡ଼ି ଛାଡ଼ି ରାଜାଙ୍କ ଫୁଲବଗିଚା ଭିତରେ ପଶିଗଲା । ଗୁଣବତୀର ମହଲ ପାଖ ବଗିଚାରେ ପଶି କଳ ଲଞ୍ଜଟାକୁ କାମୁଡ଼ିବା ଲାଗି ସେ ଏପରି ଭାବରେ ତେଣେ ନାଚ ଧାଇଁଲା ଯେ ବଗିଚାଟି ଖାଲି ପଡ଼ିଲା ହଟିଲା । ଏ ମଜାଦାର ଖେଳ ଦେଖିବା ଲାଗି ଗୁଣବତୀର ସବୁ ଦାସୀ ପୋଇଲୀ ଆସି ସେଠାରେ ଭିଡ଼ ଜମେଇଲେ । ଗୁଣବତୀର ସ୍ଥଳଣି ଗଣା ଶେଷ ହେଉ ହେଉ ସେ ବି ଏ ଖେଳ ଦେଖିବା ଲାଗି ଦୌଡ଼ିଆସିଲା । କପରା ବଲୁଆଟା ବଗିଚା ଭିତରେ ଏ ମୁଣ୍ଡରୁ ସେ ମୁଣ୍ଡ ଯାଏ ଏପରି ଭାବରେ ଲଞ୍ଜ କାମୁଡ଼ି କାମୁଡ଼ି ମାଙ୍କଡ଼ଚକ୍ର ମାରି ଗଡ଼ି ଯାଉଥାଏ ଯେ ଦାସୀ ପୋଇଲୀଙ୍କ ସହିତ ଗୁଣବତୀ କନ୍ୟା ବି ହସି ହସି ଗଡ଼ିଯାଉଥାଏ । ଏ ହସଗୋଳ ଶୁଣି ରାଜା ଓ ରାଣୀ ବି ଦୌଡ଼ି ଆସିଲେ । ବଲୁଆ ବେଳକୁବେଳ ଅଧିକ ଚପଳତା ଦେଖାଇ ମଜା କରୁଥିଲାଥାଏ । ସମସ୍ତେ ତାଳମାରି ହସୁ ହସୁ କେତେବେଳେ ଯେ ଘଣ୍ଟାଏ ବିତିଗଲା, ସେ କଥା କେହି ଜାଣିପାରିଲେନାହିଁ । ଘଣ୍ଟାଏ ବିତିଯିବା ପରେ ବଲୁଆଟା କୁଆଡ଼େ ପଳାଇଗଲା ଏବଂ ହସଗୋଳ ବନ୍ଦ ହୋଇଗଲା । ଏତିକିବେଳେ ଗୁଣବତୀର ମନେ ପଡ଼ିଲା ଯେ ସେ ଲୁଚକାଳି ଖେଳ ଖେଳୁଛି । କିନ୍ତୁ ସେତେବେଳକୁ ଲେଡ଼ିଗୁଡ଼ କହୁଣିକୁ ବୋହିଗଲାଣି । ଗୁଣବତୀ ଏସବୁ କିପରି ଘଟିଗଲା ବୋଲି ଭାବି ବ୍ୟସ୍ତ ହେଉଛି, ସେପଟୁ ରଜାପୁଅ ହସି ହସି ଆସି ପହଞ୍ଚିଗଲା । ତାକୁ ଦେଖି ଦେଖି ରାଜା ଗୁଣବତୀକୁ ପଚାରିଲେ,

"କହଲୋ ମାଆ, ତୁ କଣ ତାଙ୍କୁ ଖୋଜିପାରିଲୁନାହିଁ ?"

ଗୁଣବତୀ ଲାଜରେ ମଉଳି ପଡ଼ି କହିଲା, "ନା ବାପା, ସେ ଖୁବ୍ ବଢ଼ିଆ ଲୁଚିପାରନ୍ତି ! ମୁଁ ତାଙ୍କୁ ପ୍ରଥମ ଦୁଇ ବାଜି ହରାଇଦେଲି; କିନ୍ତୁ ଏ ଶେଷ ବାଜି ସେ ଯେଉଁଠି ଲୁଚିଛନ୍ତି, ମୁଁ ଏଣେ ବିଲୁଆଙ୍କର ପେଖନା ଦେଖି ଦେଖି ଘଣ୍ଟାଏ ବିତିଗଲା; ମୁଁ ତାଙ୍କୁ ଖୋଜିପାରିଲି-ନାହିଁ ।"

ରଜାପୁଅ ରାଜାଙ୍କୁ କହିଲା, "ମଣିମା, ଜେମା ତ ହାରିଗଲେ, ଏଥର ତାଙ୍କୁ ମୋ ସହିତ ଛାଡ଼ି ଦିଅନ୍ତୁ । ମୁଁ ଘରୁ ବାହାରିବାର ଅନେକ ଦିନ ହୋଇଗଲାଣି, ଏଥର ଫେରିଯିବି ।"

ରାଜା ଆଉ କ'ଣ କରନ୍ତେ—ସେ ବାଧ୍ୟ ହୋଇ ନିଜ ବଚନ ରକ୍ଷା କରି ଗୁଣବତୀକୁ ରଜାପୁଅ ସାଥିରେ ପଠାଇଦେଲେ । ଆଗରୁ ଯେତେ ରଜାପୁଅ ତା ହାତ ଧରିବାକୁ ଆସିଥିଲେ ସେମାନଙ୍କୁ ଗୁଣବତୀ ଅତି ସହଜରେ ହରାଇ ଦେଇପାରିଥିଲା । ଏ ରଜାପୁଅ ପରି ସେମାନେ କେହି ଏପରି ଜଳ ସ୍ଥଳ ଆକାଶ ତିନି ପୁରରେ ଲୁଚି ନଥିଲେ । ତେଣୁ ଗୁଣବତୀ ବି ଖୁସିରେ ରଜାପୁଅ ସାଥିରେ ଚାଲିଗଲା । ଗୁଣବତୀକୁ ନେଇ ଚାଲିଶି ପହିଲିମାନଙ୍କ ଘରକୁ ଯିବା ବାଟରେ ରଜାପୁଅ ନିଜର ସମସ୍ତ କାହାଣୀ କହିଗଲା । ଏ ସବୁ ଶୁଣି ଗୁଣବତୀ କାନ୍ଦି କାନ୍ଦି ହୋଇ କହିଲା, "ମୁଁ ତୁମକୁ ଛାଡ଼ି ସେ ଚାଲିଶି ପହିଲିମାନଙ୍କ ଘରେ ରହିପାରିବି ନାହିଁ । ମଲେ ପଛେ ମରିବି, ମୁଁ ତୁମରି ସହିତ ଚାଲିଯିବି ।"

ରଜାପୁଅ କହିଲା, "ତା ହେଲେ ଗୋଟିଏ କାମ କରିବ । ମୁଁ ଯେତେବେଳେ ଉଡ଼ନ୍ତା ଘୋଡ଼ା ଚଢ଼ି ଚାଲିଶି ପହିଲିମାନଙ୍କଠାରୁ ବିଦାୟ ନେବାକୁ ବାହାରିବି, ତୁମେ ବି ସେତେ-ବେଳେ ମୋତେ ବିଦାୟ ଦେବା ଲାଗି ମୋ ପାଖକୁ ଚାଲିଆସିବ । ମୁଁ ତୁମକୁ ଟେକିନେଇ ଘୋଡ଼ାରେ ବସାଇ ଘୋଡ଼ାକୁ ଇମିତି ଗୋଟାଏ ଚାବୁକ ମାରିବି ଯେ ଘୋଡ଼ା କୁଆଡ଼େ ନାହିଁ କୁଆଡ଼େ ଉଡ଼ି ପଳାଇବ, ସେ ପାଷଣ୍ଡଗୁଡ଼ାକ କ'ଣ କରିବେ କରୁଥାନ୍ତୁ ।"

ଦିହେଁ ଏପରି ମସୁଧା କରି ଚାଲିଶି ପହିଲିମାନଙ୍କ କୋଠୀରେ ହାଜରଗଲେ । ଗୁଣବତୀ କନ୍ୟାକୁ ଦେଖି ଚାଲିଶି ପହିଲିମାନ ଆନନ୍ଦରେ ନାଚିଉଠିଲେ । ଖିଆପିଆ ଶେଷ ହେବା ପରେ ରଜାପୁଅ ଘରକୁ ଫେରିବାକୁ ତରତର ହେଲା । ଚାଲିଶି ପହିଲିମାନ ତାକୁ ଉଡ଼ନ୍ତା ଘୋଡାରେ ବସାଇଦେଇ ଜଣ ଜଣ ହୋଇ ଆସି ତା'ଠାରୁ ବିଦାୟନେଲେ । ପୁଅମାନଙ୍କ ପରେ ମାଆ ଅସୁରୁଣୀ ଆସି ନାନା କଅଁଳ କଥା କହି ରଜାପୁଅଠାରୁ ବିଦାୟ ନେଇଗଲା । ଶେଷରେ ଗୁଣବତୀ କହିଲା, "ସେ ଏତେ ବିପଦ ଭିତରେ ପଶି ତମ ଘରକୁ ମୋତେ ଆଣି ଦେଲେ, ମୁଁ ବି ଯାଏ, ତାଙ୍କଠାରୁ ଟିକିଏ ବିଦାୟ ନେଇ ଆସେ ।" ଏହା କହି ସେ ରଜା ପୁଅର ଖୁବ୍ ନିକଟକୁ ଯାଇ ତା' ହାତ ଧରିପକାଇଲା । ରଜାପୁଅ ସଙ୍ଗେ ସଙ୍ଗେ ତାକୁ ଘୋଡ଼ା ଉପରକୁ ଉଠାଇନେଇ ଘୋଡ଼ାକୁ ଏପରି ଚାବୁକେ ମାରିଦେଲା ଯେ, ଘୋଡ଼ା ପବନ ବେଗରେ ସେଠାରୁ ଉଡ଼ି ପଳାଇଲା । ଘୋଡ଼ା ସେ ଦୁହିଁଙ୍କୁ ନେଇ ଅଦୃଶ୍ୟ

ହୋଇଗଲା ଦେଖି ସେ ଗୁଳଣି ପନ୍ଦରମାନ ଆବାକାବା ହୋଇଗଲେ ।

ଏଣେ ଗୁଣବତୀକୁ ଧରି ଉଡ଼ନ୍ତା ଘୋଡ଼ାରେ ଉଡ଼ି ଯାଉ ଯାଉ ରଜାପୁଅ କହିଲା, "ବୁଝିଲ ଗୁଣବତୀ, ଆମେ ଏଥର ଯାଇ ଗୁଳଣିଭାଇଆ ଅସୁରଙ୍କ ଘରେ ପହଞ୍ଚିବା । ସେମାନଙ୍କ ଘରେ ସୁନା କୋଇଲି ଚଢ଼େଇ ଅଛି । ସେମାନେ କହିଛନ୍ତି ଉଡ଼ନ୍ତା ଘୋଡ଼ାଟି ପାଇଲେ ସେମାନେ ମୋତେ ସୁନା କୋଇଲଟି ଦେବେ ।"

ଗୁଣବତୀ ପଚାରିଲା, "ସେମାନଙ୍କଠାରୁ ଆମେ ଘୋଡ଼ାଟିକି ନେଇଯାଇ ପାରିବା ନାହିଁ ?"

ରଜାପୁଅ କହିଲା, "କଥାରେ ଅଛି ଦେବତାମାନେ ବି ମଣିଷ ମାୟା ଜାଣିପାରନ୍ତି ନାହିଁ । ମଣିଷ ବୁଦ୍ଧି କି କ'ଣ ଅସୁର ବୁଝି ବଳିଯିବ ? ତୁମେ ତ ଏଡ଼େ ବୁଦ୍ଧିମତୀ, ଗୋଟିଏ ବୁଦ୍ଧି ବାହାର କର ଯେ ଘୋଡ଼ାଟି ନେଇ ପଳାଇଯିବା ।"

ଗୁଣବତୀ ଅନେକ ଭାବ ବିଚାର ଗୋଟିଏ ବୁଦ୍ଧି ବତାଇଦେଲା । ଯହିଁ ଯାଇ ଗୁଳଣିଭାଇଆ ଅସୁରଙ୍କ ଘରେ ପହଞ୍ଚି ପହଞ୍ଚି ଗୁଣବତୀ ଏପରି ଭାବ ଦେଖାଇଲା ଯେ ସେ ଗୁଳଣି ଭାଇଙ୍କ ଲୋଭ ଘୋଡ଼ା ଉପରୁ ଡ଼ିଟିଯାଇ ତା ଉପରେ ପଡ଼ିଲା । ସେମାନେ ରଜାପୁଅକୁ କହିଲେ, "ନୂଆ ଭାଇ, ଆମର ସେ ଉଡ଼ନ୍ତା ଘୋଡ଼ା ଆଉ ଲୋଡ଼ା ନାହିଁ । ତୁମେ ସୁନା କୋଇଲି ଚଢ଼େଇ ନିଅ, ଆମ ଘରେ ଏ କନ୍ୟାଟିକୁ ଛାଡ଼ିଯାଅ ଯେ ଆମ ବଡ଼ଭାଇ ତାକୁ ବାହାହେବେ । ଆମ ମାଆ ଆସି ବୁଢ଼ୀ ହେଲାଣି, ଏ କନ୍ୟା ଆମର ରନ୍ଧା ବଢ଼ା କରି ଘର ସମ୍ଭାଳିବ ।"

ରଜାପୁଅ କହିଲା, "ଆହେ ଭାଇ, ତୁମ ମାଆ ଯିଏ ମୋ ମାଆ ସିଏ ; ତୁମ ଘର ଆଉ ଆମ ଘର ଭିତରେ ଫରକ ବୋଲି କିଛି ନାହିଁ । ଗୁଣବତୀ ମୋ ସହିତ ଯାଇଥିଲେ ଆମ ଘରର ଘରଣୀ, ହୁଅନ୍ତା ଏଠାରେ ରହିଲେ ତୁମ ଘରର ଘରଣୀ ହେବ । ଉତ୍ତମ କଥା, ମୁଁ ଘୋଡ଼ାରେ ବସି ସୁନା କୋଇଲି ଚଢ଼େଇ ନେଇ ଯାଉଛି, ତୁମେ ଏବେ ଗୁଣବତୀକୁ ସମ୍ଭାଳ ।"

ଗୁଳଣି ଭାଇ ଖୁସି ହୋଇ ସୁନା କୋଇଲି ରହିଥିବା ପଞ୍ଜୁରିଟି ଆଣି ତା ହାତରେ ଧରାଇ ଦେଲେ । ରଜାପୁଅ ସୁନା କୋଇଲିର ପଞ୍ଜୁରିଟି ଧରି ଉଡ଼ନ୍ତା ଘୋଡ଼ା ଉପରେ ଚଢ଼ିଗଲା । ଯିବାବେଳ ହେବାରୁ ସେ ଗୁଣବତୀକୁ ଡାକି କହିଲା, "ରାଜକେମା, ତୁମେ ତ ଏତେ ବଡ଼ ଘରେ ଘରଣୀ ହୋଇ ଘର ସମ୍ଭାଳିବ, କାହିଁ ଦେଖି ଏ ପଞ୍ଜୁରିଟି ଟିକିଏ ସମ୍ଭାଳିଲ, ମୁଁ ମୋ ଗୁଳଣି ଭାଇଙ୍କ ସହିତ ହାତ ମିଳାଇ ଟିକିଏ ବିଦାୟ ନିଏ ।"

ଗୁଣବତୀ ପଞ୍ଜୁରିଟି ଧରିଲା । ଗୁଳଣି ଭାଇ ଆସି ଜଣ ଜଣ କରି ହାତ ମିଳାଇ ରଜାପୁଅଠାରୁ ବିଦାୟ ନେଲେ ; ମାଆ ଅସୁରୁଣୀ ଆସି ତା' ଦେହମୁଣ୍ଡ ଆଉଁସି ଦେଇ ବିଦାୟ ନେଲେ । ଶେଷରେ ଗୁଣବତୀ କହିଲା, "ମୋତେ ସେ ସାତ ସମୁଦ୍ର ତେର ନଈ ପାର କରାଇ ଆଣି ଏଡ଼େ ସୁନ୍ଦର ଘରେ ରଖାଇଦେଲେ, ମୁଁ ଟିକିଏ ତାଙ୍କ ସହିତ ହାତ ମିଳାଇ

ବିଦାୟ ନିଏ ।" ଏହା କହି ସେ ଯେତେବେଳେ ଆସି ରଜାପୁଅ ସହିତ ହାତ ମିଳାଇ ଦିଏ, ରଜାପୁଅ ତାକୁ ଚଟ୍ କରି ଘୋଡ଼ା ଉପରକୁ ଟେକି ନେଇ ଘୋଡାକୁ ଛୁଟେ ମାରିଲା ଯେ ଘୋଡା ଅଖିପିଛୁଳାକେ ଯାଇ ଆକାଶ ମାର୍ଗରେ ପାଇଲା । ବୁଲଣି ଭାଇ ତଳେ ଠିଆହୋଇ ଡାକ ପକାଇଲେ, "ଆହେ ଗୁଣବତୀ, ତଳକୁ ଡେଇଁପଡ଼, ତଳକୁ ଡେଇଁପଡ । ସେ ଚୋରଟା ତୁମକୁ ନେଇ ପଳାଉଛି ।"

ଗୁଣବତୀ ସେମାନଙ୍କ ଉପରକୁ ଲେଣ୍ଡ୍ରେ ଛେପ ପକାଇ ଦେଇ କହିଲା, "ମୁଁ ଯାଇ ଏ ଚୋର ସହିତ ଘରେ ବୁଲିଆସେ, ତା'ପରେ ତଳକୁ ଡେଇଁବି ।"

ବୁଲଣି ଅସୁର ସେପରି ଉପରକୁ ଚାହିଁଥାନ୍ତି, ରଜାପୁଅ ଏଣେ ସୁନା କୋଇଲି, ଉଡନ୍ତା ଘୋଡ଼ା ଓ ଗୁଣବତୀ କନ୍ୟାକୁ ଧରି ଯେଉଁ ତିନିମୁହାଣୀ ଛକଠାରୁ ଅଣବାହୁଡ଼ା ସଡ଼କରେ ବାହାରିଥିଲା ସେହି ତିନିମୁହାଣୀ ଛକରେ ଆସି ପହଞ୍ଚିଗଲା । ସେତେବେଳକୁ ତା ବଡ଼ ଦୁଇଭାଇ ସୁନାକୋଇଲି ଖୋଜି ଖୋଜି ନିରାଶ ହୋଇ ସେଠାକୁ ଫେରିଆସିଥାନ୍ତି । ସେ ଦିହେଁ ସେ ପାଖରେ ଥିବା ଗୋଟିଏ କୂଅ ମୂଳେ ବସି ରନ୍ଧାବଢ଼ା କରୁଛନ୍ତି; ବଡ଼ ଭାଇଙ୍କୁ ଦେଖି ରଜାପୁଅ ସେଇଠି ଘୋଡା ଓହ୍ଲାଇ ଦେଲା । ତା' ହାତରେ ସେ ସୁନାକୋଇଲି, ତାର ସେ ଉଡନ୍ତା ଘୋଡା ଓ ତା ସହିତ ସେ ଭୁବନ-ମୋହିନୀ କନ୍ୟା ଗୁଣବତୀକୁ ଦେଖି ବଡ ଦୁଇଭାଇ ଈର୍ଷାରେ ଜଳିଗଲେ । କିନ୍ତୁ ମନକଥା ମନରେ ରଖି ଉପରକୁ ନାନା ଆଦର କରି ଭାଇକୁ ସେମାନେ ଖୁବ୍ ପ୍ରଶଂସା କରିବାକୁ ଲାଗିଲେ । ସମସ୍ତେ ମିଶି ସେଇଠି ଖିଆପିଆ କଲେ । ତା'ପରେ ସମସ୍ତେ ଉଡନ୍ତା ଘୋଡାରେ ଚଢ଼ି ନିଜ ରାଜ୍ୟକୁ ଫେରିବାକୁ ବସିଛନ୍ତି, ଏ ସମୟରେ ବଡଭାଇ ସାନ-ଭାଇକୁ ଏପରି ଗୋଟାଏ ଧକ୍କା ମାରିଲା ଯେ ସେ ବିଚରା ଘୋଡ଼ା ଉପରୁ ଖସି ଭୁଷ୍ କିନା କୂଅ ଭିତରେ ଗଳିପଡ଼ିଲା । ଏ ଘଟଣା ଦେଖି ଗୁଣବତୀ କାଇଁ କାଇଁ ହୋଇ କାନ୍ଦିଉଠିଲା । ତାର ସେ କାନ୍ଦ ବୋବାଳି ଶୁଣି ମଝିଆଁ ଭାଇ କହିଲା, "ଆହେ ଜେମା, କାହିଁକି ଏପରି କାନ୍ଦୁଛ ଶୁଣେ? ଆମେ କଣ ତୁମକୁ ଦୁଃଖରେ ରଖିବୁ? ବଡଭାଇ ତୁମକୁ ବିବାହ କରି ରାଜ୍ୟର ପାଟରାଣୀ କରିବେ; ସାନଭାଇକୁ ବିବାହ କରି ତୁମେ କି ସୁଖ ପାଇଥାନ୍ତ ?"

ଏ କଥା ଶୁଣି ଗୁଣବତୀ ଆହୁରି ଜୋର୍ରେ କାନ୍ଦିଉଠିଲା । ଉଡନ୍ତା ଘୋଡ଼ା ବି ଆଉ ନ ଉଡ଼ି ସେଠାରେ ଠିଆହୋଇଗଲା । ବଡ ଦୁଇଭାଇ ନାଚାର ହୋଇ ଘୋଡାରୁ ଓହ୍ଲାଇପଡ଼ିଲେ ଏବଂ ଗୁଣବତୀକୁ ଟାଣିନେଇ ସେଠାରୁ ଧାଇଁ ପଳାଇଲେ । ସାନଭାଇ କୂଅ ଭିତରେ ପଡ଼ି ଭାଗ୍ୟକୁ ନିନ୍ଦୁଥାଏ; ଉଡନ୍ତା ଘୋଡାଟି ଏଣେ ତେଣେ ଚକର ମାରି ତାକୁ ଖୋଜୁଥାଏ, କାରଣ ସେ ଜାଣେ ନାହିଁ ଯେ ରଜାପୁଅ କୂଅରେ ପଡ଼ିଯାଇଛି । ଏପରି କିଛି ଦିନ ପରେ ଦିନେ ଘୋଡା ଶୁଣିଲା, କୂଅ ଭିତରୁ କେହି ଜଣେ କହୁଛି —

"ଘୋଡ଼ା ଗଲା, ଚଢ଼େଇ ଗଲା ଗୁଣବନ୍ତୀ କନ୍ୟା ପଳାଇଗଲା ;
କୂଅରେ ପଡ଼ି ମୁଁ ଯାଉଚି ରଡ଼ି ଯେ କଏ ଅଛୁ ଆଉ ଶୁଣିବ ଭଲା !

ଏ କଥା ଶୁଣିବା କ୍ଷଣି ଉଡ଼ନ୍ତା ଘୋଡ଼ା କୂଅ ଭିତରକୁ ଉଡ଼ିଗଲା । କୂଅଟିରେ ଖୁବ୍ କମ ପାଣି ଥାଏ । ସେ ଘୋଡ଼ା ରଜାପୁଅକୁ ପିଠିରେ ବସାଇ ପୁଣି ସେ ଭିତରୁ ଉଡ଼ି ବାହାରିଆସିଲା । ରଜାପୁଅ କ ଆଉ ବଳମ୍ବ କରେ ! ସେ ସଙ୍ଗେ ସଙ୍ଗେ ଘୋଡ଼ା ଉଡ଼ାଇ ନିଜ ରାଜ୍ୟକୁ ଫେରିଲା ।

ଏଣେ କ'ଣ ହୋଇଥାଏ ନା, ବଡ଼ ଦୁଇ ଭାଇ ଗୁଣବନ୍ତୀକୁ ନେଇ ନିଜ ରାଜ୍ୟରେ ପହଞ୍ଚିବା ମାତ୍ରେ ବାପାଙ୍କୁ କହିଦେଇଥାନ୍ତି ଯେ ସାନ ଭାଇକୁ ବାଟରେ ଅସୁର ଖାଇଗଲା, ସେମାନେ ଅସୁରମାନଙ୍କ ସହିତ ଖୁବ୍ ଲଢ଼ି ସୁନା କୋଇଲି ଓ ଗୁଣବନ୍ତୀକନ୍ୟାକୁ ଆଣିଛନ୍ତି । ସାନପୁଅର ମରଣ କଥା ଶୁଣି ରାଜା ବଡ଼ ଦୁଃଖ କଲେ । ଯାହାହେଉ ଶେଷରେ ସୁନା କୋଇଲିକୁ ଗୀର୍ଜାରେ ରଖିଦିଆଗଲା ଏବଂ ବଡ଼ ରଜାପୁଅ ସହିତ ଗୁଣବନ୍ତୀର ବିବାହ ପାଇଁ ସକଳ ଆୟୋଜନ କରିଦିଆଗଲା । ଏ କାଣ୍ଡକାରଖାନା ଦେଖି ଗୁଣବନ୍ତୀ ମୂକ ପାଲଟି ଯାଇଥାଏ । ମନେ ମନେ ଭାବୁଥାଏ, ଶେଷକୁ ନିଶ୍ଚୟ ଏମାନଙ୍କୁ ଗୋଟିଏ ଶିକ୍ଷା ଦେଇ ଏଠାରୁ ପଳାଇଯିବ ।

ସାନପୁଅ ଆସି ରାଜ୍ୟରେ ପହଞ୍ଚିବା ବେଳକୁ ବଡ଼ପୁଅ ସାଥିରେ ଗୁଣବନ୍ତୀର ବିବାହ ଉତ୍ସବ ଚାଲିଥାଏ । ଗୀର୍ଜାଘରେ ରାଜା, ରାଣୀ, ମନ୍ତ୍ରୀ ଓ ପୁରୋହିତମାନେ ଭୁଣ୍ଡ ହୋଇଥାନ୍ତି । ଦେଖଣାହାରିଙ୍କ ସଂଖ୍ୟା ତ ଗଣିହେବନାହିଁ । କାହାରି ମନରେ କିନ୍ତୁ ସୁଖ ନଥାଏ, କଥା କଣ କି ଯେଉଁ ସୁନା କୋଇଲି ପାଇଁ ଏତେ ଘଟଣା ଘଟିଗଲା, ସେ ଗୀର୍ଜାକୁ ଆସିଥାଏ ସତ, ହେଲେ ସେ ମୋଟେ ଗୀତ ଗାଉ ନଥାଏ । ପୁଣି ଯେଉଁ ଗୁଣବନ୍ତୀ କନ୍ୟାର ବିବାହ ଦେଖିବା ଲାଗି ଏତେ ଲୋକ ଭୁଣ୍ଡହୋଇଥାନ୍ତି, ସେ ଗୀଜାର ବେଦି ପାଖକୁ ମୋଟେ ଆସୁ-ନଥାଏ; କ୍ରୋଧରେ ଏତେ ଜୋର୍‌ରେ ପାଟିକରୁଥାଏ ଯେ ଲୋକେ ଆଶ୍ଚର୍ଯ୍ୟ ହୋଇଯାଉଥାନ୍ତି । ଯାହାହେଉ କୌଣସିମତେ ତାକୁ ଟାଣି ଓଟାରି ବେଦି ପାଖକୁ ଅଣାଗଲା; ପୁରୋହିତମାନେ ବରକନ୍ୟାଙ୍କୁ ଶପଥ ପାଠ କରାଇବାକୁ ଯାଉଛନ୍ତି, ସେ ହୋ ହୋ କରି କାନ୍ଦିଉଠିଲା । ସୁନା କୋଇଲି କାହିଁକି ଗୀତ ଗାଉ ନାହିଁ, ଗୁଣବନ୍ତୀ କାହିଁକି କାନ୍ଦୁଛି, ଏ ସବୁର କାରଣ କେହି ବୁଝିନପାରି ପରସ୍ପରକୁ ଚାହୁଁଛନ୍ତି. ଏତିକବେଳେ ଧାଇଁ ଧାଇଁ ଶବ୍ଦକରି ଗୋଟାଏ ଉଡ଼ନ୍ତା ଘୋଡ଼ା ଆସି ଗୀର୍ଜା ଭିତରେ ପଶିଗଲା । ଲୋକେ ଉଡ଼ନ୍ତା ଘୋଡ଼ା ନାଁ ଶୁଣିଥିଲେ ସତ; କିନ୍ତୁ କେହି କେବେ ଦେଖିନଥିଲେ । ସମସ୍ତେ ତେଣିକି ଚାହିଁ ବସିଥାନ୍ତି ତ ଦେଖାଗଲା ଯେ ଘୋଡ଼ାରେ ସାନପୁଅ ବସିଛି । ସାନପୁଅ ଆସି ଗୀର୍ଜାରେ ପହଞ୍ଚି, ପହଞ୍ଚି ସବୁ ଓଲଟ ପାଲଟ ହୋଇଗଲା । ଗୁଣବନ୍ତୀ କନ୍ୟା ଆଖିରୁ ଲୁହ ପୋଛି ତା ପାଖକୁ ଦୌଡ଼ିଆସି କହିଲା, "ମୋତେ ତୁମେ କଣ ଏଇଥିପାଇଁ ମୋ ବାପାଙ୍କ ଘରୁ ଆଣିଥିଲ ?" ସେପଟେ ସୁନା

କୋଇଲି ବି ମଧୁର ସ୍ୱରରେ ଗାଇଉଠିଲା । ପୁଅକୁ ଦେଖିବା ଲାଗି ରାଜା ଓ ରାଣୀ ଦୌଡ଼ି ଆସିଲେ ।

ଏ ସମୟରେ ପ୍ରଥମେ ସେ ଯେଉଁ ଦାଢ଼ିବାଲା ବୁଢ଼ା ସୁନାକୋଇଲି ଆଣିବାଲାଗି କହିଥିଲା, ସେ ଆସି ସେଠାରେ ପହଞ୍ଚିଗଲା । ସାନପୁଅ ଦେଖିଲା ଏହି ବୁଢ଼ାଟି ହିଁ ତାକୁ ନାନା ରୂପରେ ଦେଖାଦେଇ ବିପଦ ମୁହଁରୁ ଖସିବା ଲାଗି ବିଭିନ୍ନ ଉପଦେଶ ଦେଇଥିଲା । ବୁଢ଼ା ରାଜା ଓ ରାଣୀଙ୍କୁ ସକଳ କଥା କହିଦେଲା । ସତକଥା ସମସ୍ତେ ଜାଣିଯିବା ସଙ୍ଗେ ସଙ୍ଗେ ବଡ଼ ଦୁଇଭାଇଙ୍କ ଚୁଟି ଧରି ଏପରି ମାଡ଼ ମାରିଲେ ଯେ ସେ ଦୁଇଟା ରାଜ୍ୟ ଛାଡ଼ି କୁଆଡ଼େ ନାହିଁ କୁଆଡ଼େ ଯାଇ ଲୁଚିଲେ । ଶେଷରେ ସାନପୁଅ ଗୁଣବତୀକୁ ବିବାହ କରି ସୁଖ ଶାନ୍ତିରେ ବାପା ମାଆଙ୍କୁ ରାଜ୍ୟ ଶାସନରେ ସାହାଯ୍ୟ କଲା ଓ ସୁନା କୋଇଲି ସବୁଦିନ ତା' ଗୁଣଗାଇ ମଧୁର ଗୀତ ଗାଇଲା ।

---

# ସ୍କୁଲ ଛାତ୍ରଛାତ୍ରୀଙ୍କର ଅତି ପ୍ରିୟ ବହି ବିଶ୍ୱସାହିତ୍ୟ ଗ୍ରନ୍ଥମାଳା